

# ରତ୍ନଦ୍ୱୀପର ମାଟି

ପ୍ରସନ୍ନ କୁମାର ମିଶ୍ର

# ରତ୍ନଦ୍ୱୀପର ମାଟି

ଶ୍ରୀ ପ୍ରସନ୍ନ କୁମାର ମିଶ୍ର ( ଅଗ୍ନିହୋତ୍ରୀ )



ବିଶ୍ୱଭାରତୀ, ଶାନ୍ତିନିକେତନ
୧୯୭୧

ରଚନା—ପ୍ରସନ୍ନ କୁମାର ମିଶ୍ର (ହୋମ୍ମି ହୋବୀ)
ଗ୍ରାମ—ପିଡେଇପୁର, ପୋ: କଣ୍ଠାପାଡ଼
ଜି: ବାଲେଶ୍ୱର

ପ୍ରକାଶକ—'ନୀଳଚକ୍ର'
କିଶୋରୀ ମୋହନ ଦାସ
ଯାଜପୁର, କଟକ

ଅସ୍ମପ୍ରକାଶ—୧୯୬୧

ପ୍ରଚ୍ଛଦପଟ୍ଟ ଶିଳ୍ପୀ—ଶ୍ରୀ କିଶୋରୀ ମୋହନ ଦାସ

ଅଲେଖ ଚିତ୍ରଶିଳ୍ପୀ—ଶ୍ରୀ ମୋହିତ କୁମାର ପାଣିଗ୍ରାହୀ

ମୁଦ୍ରାକର—ଶ୍ରୀ ବାସୁଦେବ ସାମଲ
ଓଡ଼ିଶା ଆର୍ଟ ପ୍ରେସ, କଲିକତା—୧୨

ମୂଲ୍ୟ—ଟ ୨ ଙ୍କା
ଦୁଇଟଙ୍କା

## ଏ ପତ୍ର ପାଇବେ ଶ୍ରୀ ରମାନାଥ ଜେନା

ପଟ୍ଟାମୁଣ୍ଡାଇ, କଟକ



ପ୍ରିୟ ରମାନାଥ ବାବୁ,

ଆଜିର ଦିନଟି ଆନନ୍ଦମୟ । ଏ ଆନନ୍ଦରେ ଆପଣ ଭାଗନେଇ ପାରୁ ନାହାନ୍ତି ବୋଲି ଦୁଃଖ କରିବେ ନାହିଁ । କାରଣ, ଆପଣଙ୍କଠାରୁ ମୁଁ ଖୁବ୍ ଦୂରରେ ।

... ବନ୍ଧୁତା ଭୁଲିବାର ନୁହେଁ । ଏଥିରେ ଛଳନାର ଆବରଣ ନ ଥାଏ । ବନ୍ଧୁତା ରକ୍ଷା ପାଇଁ କେବେ ହେଲେ ପ୍ରିୟକଥା କହିବା ଦର୍କାର ହୁଏ ନାହିଁ । ବୟସ, ପଦବୀ ଓ ସମ୍ମାନର ସୀମାନ୍ତରେ ବନ୍ଧୁତାର ସ୍ୱର୍ଣ୍ଣ-ସିଂହଦ୍ୱାର ଅବସ୍ଥିତ । ବନ୍ଧୁ ଦୟା ଦେଖାଏ ନାହିଁ, କ୍ଷମା ଆଶାକରେ ନାହିଁ ସମ୍ମାନ ଦାବୀ କରେ ନାହିଁ—କେବଳ ତୃପ୍ତି ଖାଏ ; ଜୋର କରି ଝୁଅଏ । ଆପଣଙ୍କର ବନ୍ଧୁତା ମୋ ହୃଦୟରେ ଅଜସ୍ର ଲାବଣ୍ୟର ସ୍ଥଳ-ପଦ୍ମ ଫୁଟାଇଛି ।

ମୁଁ ଆପଣଙ୍କ ପରି ଜଣେ ମାଳାକାର । ଫୁଲ ତୋଳି ଗୁନ୍ଥିଛି । ତହିଁରୁ କେତେକ ପୃଥିବୀରେ, ଆଉ କେତେକ ନନ୍ଦନ କାନନରେ ଫୁଟିଥିଲା ।

ପୃଥିବୀକୁ ଆସିବାର ବହୁଦିନ କଟିଗଲାଣି । କୋଡ଼ିଏ ଟପି ଏକୋଇଶି ଟପିବା ଉପରେ । ମୋର ଅଙ୍ଗେ ଅଙ୍ଗେ ପ୍ରତି ଲୋମକୂପେ

ଯୌବନର ଗୃହାଣୀ, ତାରୁଣ୍ୟର ତାମ୍ରଲେଖ । ହୁଏତ ଏଯାଏଁ ବିଶ୍ୱବାସୀଙ୍କ ହାତରେ କିଛି ହେଲେ ଦେଇ ପାରିନି ନାହିଁ । କଣ କରିଛି ମୁଁ ବିଶ୍ୱର ମଙ୍ଗଳପାଇଁ ? ଅଳସ ଅସୁସ୍ଥ କରି ମୁଁ କର୍ମ ଭୁଲି ଯାଇଛି । ଦୁନିଆ ମୋତେ ଶାସ୍ତି ଦେଉ । କାନ ମୋଡ଼ି କର୍ମ ଆଦାୟ କରୁ । ନ ହେଲେ ମୁଁ ଭଗବାନଙ୍କ ନିକଟରେ ଦୋଷୀ ହୋଇ ରହିଯିବି ଯେ ? ବାରିପଦା କଲେଜରେ ଅଧ୍ୟୟନ ବେଳେ ଆପଣ ମୋତେ ବହୁ କର୍ମପ୍ରେରଣା ଦେଇ ଥିଲେ । ଏଣିକି ଦେବାକୁ ଭୁଲିବେ ନାହିଁ ।

ଜୀବନର ଗୋପନ କାହାଣୀ ଆପଣଙ୍କୁ ଶୁଣାଇ ନାହିଁ । କ୍ଷୁଦ୍ର ଚିଠିରେ ତାହା ଲେଖିବା ବି ସମ୍ଭବ ନୁହେଁ । ମୋର କବିତା ଆପଣଙ୍କ ହାତରେ ଦେଲି । ସେମାନେ ଆପଣଙ୍କୁ ବହୁ ରାତି ଜାଗର ରହି ଗପ କହିବେ । ସେମାନେ ଗପ କହୁଥିବା ବେଳେ ଆପଣ ଶୋଇ ନ ପଡ଼ିଲେ ହେଲା ।

ଭାବ ଅନାବୃତା । ସତ୍ୟ ତାର ଗୃହାଣୀ । ସୁନ୍ଦର ତା'ର ରୂପ । ମହୁ ମହୁ ତାର ବାସ । ସେ ବସନ୍ତର ସୁଲୁ ସୁଲିଆ ବାଆ ପରି ଆସେ, ଝରକାର ପର୍ଦ୍ଦା ଉଡ଼ାଇ ଘରେ ପଶେ । କାନରେ କୁତୁ କୁତୁ କରି ଡାକେ ଉଠ, ଉଠ......ମୁଁ ଆସିଛି । ମୋ ପ୍ରତି ତାର ଭାରି ଶ୍ରଦ୍ଧା, ସବଗ । କହୁ ପାରିବେ କାହିଁକି ?........ସଞ୍ଜ, ସକାଳ ରାତି ଦିନ କିଛି ସେ ମାନେ ନାହିଁ । ଜହ୍ନିଫୁଲର ଜୀବନଧରି ସେ ଆସିଥାଏ,...ଏଣୁ ଫେରିଯାଏ । ସବୁ ଦିନ ପାଇଁ ଧରି ରଖି ହୁଏ ନାହିଁ । ଏଇ କବିତା ଗୁଡ଼ିକ ସେଇ ଭାବ-ପ୍ରତିମା'ର ଭିନ୍ନ ଭିନ୍ନ ମୁହୂର୍ତ୍ତର ଫଟୋ । ସେ ମୁହୂର୍ତ୍ତ ଗୁଡ଼ିକ ଅବିସ୍ମରଣୀୟ ।

ଯନ୍ତ୍ର ଶିଳ୍ପର ଉନ୍ନତି ଅନ୍ନ ସମସ୍ୟାର ସମାଧାନ କରି ପାରିବ, ଗୋଟିଏ ଜାତି ଗଠନ କରି ପାରିବ ନାହିଁ । ଓଡ଼ିଶା କ୍ଷେତ୍ରରେ ତାହା ପ୍ରମାଣିତ ହୋଇଛି । ବଙ୍ଗୀୟ ମାନଙ୍କ ଓଡ଼ିଆ ଲୋପ ଆକ୍ରମଣରୁ ଦୁର୍ଭିକ୍ଷ ପ୍ରପୀଡ଼ିତ, ରାଜନୀତି କ୍ଷେତ୍ରରେ ମୃତ ଓଡ଼ିଆଙ୍କୁ ପୂର୍ବ ରଚିତ ସାହିତ୍ୟ ଓ ତତ୍କାଳୀନ ସାହିତ୍ୟିକ ମାନେ ବଞ୍ଚାଇଛନ୍ତି । ଖୋର୍ଦ୍ଧାର ଶହ ଶହ ପାଇକ, ବାରବାଟୀର ଭଗ୍ନାବଶେଷ ତାହା କରିପାରି ନ ଥାନ୍ତେ । ଏ ଜାତି ଆଜି ବଞ୍ଚିଛି କେବଳ ସ୍ଥାପତ୍ୟକଳା ଓ ସାହିତ୍ୟ ଯୋଗୁ । ଏ

ଦେଶରେ ଅନ୍ୟର ସାହିତ୍ୟଙ୍କ ଲେଖା । ଆପଣ କଲମ ଜୋର କରି ଧରନ୍ତୁ । ଓଡ଼ିଶା ଆପଣଙ୍କୁ ଦର୍କାର କରେ ।

ଓଡ଼ିଶା ଦେବଭୂମିର ଦେଶ ; ବହୁଧର୍ମର ସମନ୍ୱୟ କ୍ଷେତ୍ର । ସେ ଦେଶରେ ଜନ୍ମ ଲଭ କରି ମୋର ଆତ୍ମା ପବିତ୍ର ହୋଇଛି । ମୁଁ କ୍ଷମତା ଗୃହେଁ ନା, ଧନ ଗୃହେଁ ନା, ମାନ ସମ୍ମାନ ଗୃହେଁ ନା । କାରଣ ମୁଁ କ୍ଷମତାଶାଳୀ, ଧନୀ, ସମ୍ମାନାସ୍ପଦ । ପୃଥିବୀ ମୋତେ ଗୋଡରେ ଅଡେଇ ଦେଲେ ଦୁଃଖିତ ହେବି ନାହିଁ, ଯଦି ଓ ମୁଁ ଶାଳଗ୍ରାମ ନୁହେଁ । ମୁଁ କେବଳ ଗୃହେଁ ଓଡ଼ିଶା ପ୍ରତି ଅବଗ୍ଣନ କରି ବିଶ୍ୱବାସୀ ଭୁଲ୍ ନ କରନ୍ତୁ । ବୈଶିଷ୍ଟ୍ୟ ସ୍ୱୀକୃତ ହେଉ ।

ଆଜି ଓଡ଼ିଆ ମାନଙ୍କର ଆତ୍ମ ହେୟଜ୍ଞାନ ବୃଦ୍ଧି ପାଇଛି । ସେଥି ପାଇଁ ସେମାନେ ଅତୀତ ପ୍ରେମୀ ହୋଇ ପଡୁଛନ୍ତି । ହେବାର ତ କଥା । ଅତୀତକୁ ଭଲପାଇ ବର୍ତ୍ତମାନର ପ୍ରଗତିଶୀଳ ପରିବର୍ତ୍ତନକୁ ଘୃଣା କରିବା ମଣିଷର ସାଧାରଣ ଦୁର୍ବଳତା । ଓଡ଼ିଶା କ୍ଷେତ୍ରରେ ଏହା ବୋଧ ହୁଏ ବେଶୀ । କାରଣ ଅତୀତ ଉଜ୍ଜ୍ୱଳମୟ । କୋଣାର୍କ, ଭୁବନେଶ୍ୱର, ପୁରୀ ଶାରଳା, ଭଞ୍ଜ, ବଳଦେବଙ୍କୁ କିଏ ଭୁଲି ପାରେ ? କିନ୍ତୁ ଅତୀତର ମାୟାପୁରୀ ଭିତରେ ବୁଡିରହି ଭବିଷ୍ୟତକୁ ଭୁଲିଯିବା ବୁଦ୍ଧିମତ୍ତାର ପରିଚୟ ନୁହେଁ । ମୁଁ "ନବଜୀବନ" ✱ କବିତାରେ ଓଡ଼ିଆ ପ୍ରାଣରେ ନୂତନ ଚମକ ଦେବାର ଚେଷ୍ଟା କରିଥିଲି । ଓଡ଼ିଆ ମାନେ କର୍ମଠ ହେଲେ, ସାଧନାମୟ ଜୀବନ ଯାପନ କଲେ ବିଶ୍ୱରେ ଉପଯୁକ୍ତ ସମ୍ମାନ ପାଇବେ । ମୁଁ ଦୁଃଖ କଙ୍କାଳକୁ ଗ୍ରାସ କରି ନବଜୀବନରେ ଆନନ୍ଦ ପରିବେଷଣ କରିଥିଲି । ତାହାର ସ୍ୱାଦୁ ଅମୃତ ପରି । ଜାଣେ ନାହିଁ, କେତେଜଣଙ୍କୁ ତାହା ପ୍ରେରଣା ଦେଇଛି ।

ମୁଁ ଓଡ଼ିଶାରୁ ବହୁ ଦୂରରେ । କିନ୍ତୁ ଶାନ୍ତିନିକେତନର ଆମ୍ରକୁଞ୍ଜରେ, ବକୁଳବୀଥିରେ ମୁଁ ଓଡ଼ିଆ ପଲ୍ଲୀର ଛବି ଦେଖେ । ଓଡ଼ିଶା ମୋର ଅନ୍ତରେ ଅନ୍ତରେ । ମୁଁ ଉତ୍କଳର ବୃନ୍ଦାକୁ ସ୍ୱପ୍ନ ଦେଖେ, ବଙ୍ଗ ଦେଶର ରାଧାକୁ ନୁହେଁ ।

---

✱ ଉକ୍ତ ଶିରୋନାମାରେ ମୋର ଗୋଟିଏ କବିତା "ନବଜୀବନ" ୪ର୍ଥ ବର୍ଷ ଅଷ୍ଟମ ସଂଖ୍ୟା, (ନଭେମ୍ବର ୧୯୫୯)ରେ ପ୍ରକାଶ ପାଇଥିଲା ।

ମୁଁ ଗଦ୍ୟରେ ଲେଖିବି ବୋଲି ଜିଦ୍ ଧରି ବସିନାହିଁ । ସ୍ୱାଭାବିକ ଭାବରେ କବିତା ଯେଉଁ ରୂପରେ ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରିଛି—ମୁଁ ସେହିଭଳି ଲେଖିଛି । ତାହା କେତେବେଳେ ଗଦ୍ୟମୟୀ, କେତେବେଳେ ବା ଛନ୍ଦମୟୀ ।

ନାରୀ ସଜ୍ଜିତ ହେଲେ ସୁନ୍ଦର ଦିଶେ । ହାତରେ ଖଡ଼ୁ, ଗୋଡ଼ରେ ବାଙ୍କିଅ, ନାକରେ ନଥ ପିନ୍ଧି ଓଡ଼ିଶା ଲକ୍ଷ୍ମୀ ରୂପବତୀ । କବିତା ନାରୀ ପୁରୁଣା ଅଲଙ୍କାର ପିନ୍ଧି ରମା । ନୂତନ ଯୁଗୋପଯୋଗୀ ଅଲଙ୍କାରରେ ସଜାଇ ମୁଁ କବିତା ଗୁଡ଼ିକ ସୁଷମ କରିବାରେ ଚେଷ୍ଟା କରିଛି । ଆପଣ ତାହା ଅନୁଭବ କରିପାରିବେ ।

ଖ୍ରୀଷ୍ଟପର ବିଂଶଶତାବ୍ଦୀ ରେ ମୋର ଜନ୍ମ । ପୃଥିବୀର ଜନ୍ମ ଆଜର ପ୍ରାୟ ଦୁଇ କୋଟି ବର୍ଷ ତଳେ ହୋଇ ଥିଲା । ଦୁଇକୋଟି ବର୍ଷ ବୟସ୍କା ପୃଥିବୀ ଆଜ ନୂଆ କାବ୍ୟ ଶୁଣିବ । ଆଗରୁ ସେ ବାଲ୍ମୀକୀ, ବ୍ୟାସ, ଭଞ୍ଜ, ରବୀନ୍ଦ୍ରଙ୍କ ମୁହଁରୁ କିଛି କିଛି ଶୁଣିଛି । ଆଜ ମୁଁ କହିବି — ନିଶ୍ଚୟ ନୂଆ ଲାଗିବ । ଗୁଲ୍ଲ ଗୁଲିଆ ଟିକି ପୁଅର ଦିଗୋଟି କଥା ଶୁଣିବାକୁ କାହାକୁ ଭଲ ନ ଲାଗେ ?

Art is never only for Art's sake; ଲୋକ ହିତ ଅର୍ଥେ କଳା, ଓ ସାହିତ୍ୟର ସୃଷ୍ଟି । ସଭ୍ୟତାର ବିକାଶମୂଳରେ ସାହିତ୍ୟର ଏହି ଜନମଙ୍ଗଳ ଉଦ୍ଦେଶ୍ୟ ମୂଳକ ପ୍ରବାହ ବିଦ୍ୟମାନ । ଏହା ଅସ୍ୱୀକାର କରି ହେବ ନାହିଁ ।

ଅନେକେ ପଚାରନ୍ତି — ମୁଁ କବିତା କାହିଁକି ଲେଖେ । ମୁଁ ସେମାନଙ୍କୁ ସନ୍ତୋଷଜନକ ଉତ୍ତର ଦେଇ ପାରେ ନାହିଁ । କିନ୍ତୁ ମୋର ସୃଷ୍ଟି ଉଦ୍ଦେଶ୍ୟ — ବିହୀନ ନୁହେଁ । ଏହା କଳାର ଅପପୋଷଣ ନକରି ସଭ୍ୟତାର ପରିପୋଷଣ କରିବା ଦିଗରେ ସମର୍ଥ ହେଲେ ମୁଁ ଆନନ୍ଦିତ ହେବି ।

ଡିସେମ୍ବର, ୧୫
୧୯୬୧

ଇତି
ସ୍ନେହର ବନ୍ଧୁ
**ପ୍ରସନ୍ନ କୁମାର ମିଶ୍ର**
ଶାନ୍ତିନିକେତନ

ମନେରଖିବ—

କବିତା ଲେଖିବା ପାଇଁ ବନ୍ଧୁମାନଙ୍କର ଉତ୍ସାହ ଦରକାର । ମୋର ବହୁବନ୍ଧୁ, ଗୁରୁଜନ ମୋତେ ଉତ୍ସାହିତ କରିଛନ୍ତି । ଯାଜପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପଢ଼ିଲା ବେଳେ ମାନନୀୟ ଶିକ୍ଷକ ଶିଳ୍ପୀ ଶ୍ରୀଜଗବନ୍ଧୁ ନାୟକ, ସହପାଠି ଶ୍ରୀ ଅତୁଲ ଚନ୍ଦ୍ର ମହାପାତ୍ର, ଶ୍ରୀ ପଦ୍ମନାଭ କର, ଶ୍ରୀ ନୃସିଂହ ଚରଣ ମହାନ୍ତି, ଶ୍ରୀ ଅଶୋକ କୁମାର ଦାସ, ଶ୍ରୀ ବିଭୂତି ଭୂଷଣ ମହାନ୍ତି; ବାଲେଶ୍ୱର ଫକିର ମୋହନ କଲେଜରେ ପଢ଼ିଲା ବେଳେ ବନ୍ଧୁ ସହପାଠି ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର ଶ୍ରୀ ନନ୍ଦ କିଶୋର ଦାସ୍, ଶ୍ରୀ ଅବସର ବେଉରିଆ, ଶ୍ରୀ ଦୁର୍ଗା ଚରଣ ମହାନ୍ତି, ବୈକୁଣ୍ଠ ଚରଣ ଗଡ଼ଜଲ, ଶ୍ରୀ ସୀତାନାଥ ପାଣି ଗ୍ରାହୀ, ଶ୍ରୀ ପ୍ରତାପ ଚନ୍ଦ୍ର ଦାସ୍; ବାରିପଦାରେ ପଢ଼ିଲା ବେଳେ ବନ୍ଧୁ ଶ୍ରୀ ସୁଧୀର କୁମାର ସମରେନ୍ଦ୍ର ନାରାୟଣ, ଶ୍ରୀ ଦେବାର୍ଚ୍ଚନ ଶାହା, ଶ୍ରୀ ରବିନ୍ଦ୍ରନାଥ ମହାନ୍ତି, ଶ୍ରୀ ଜ୍ଞାନରଞ୍ଜନ ଦାସ୍ ଓ କବିବଂଧୁ ରମାନାଥ ଜେନା ବିମଳ ନିର୍ମାଲ୍ୟ କର୍ମପ୍ରେରଣା ଦେଇଛନ୍ତି । ମାଯୁଲିପଟ୍ଟମ୍‌ରେ ଇଞ୍ଜିନିଅରିଂ ପଢ଼ିଲାବେଳର ସାଥୀ ଶ୍ରୀନଗେନ୍ଦ୍ର ନାଥ ସ୍ୱାଇଁ, ଶ୍ରୀଆନନ୍ଦ ଚନ୍ଦ୍ର ରଥଙ୍କର ହସ ହସ ମୁଖ ଅଜବ ମୋ ଆଖି ଆଗରେ ନାଚି ଉଠେ । ବିଶ୍ୱଭାରତୀ, ଶାନ୍ତିନିକେତନ କଥା ନ କହିବା ଭଲ । ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦ ମୋତେ ରୁଚିବନ୍ତ ଓ ମାର୍ଜିତ କରିଛି । ମୋର ମାନନୀୟ ଅଧ୍ୟାପକ ଡ଼ଃ କୁଞ୍ଜ ବିହାରୀ ଦାଶ, ଡ଼ଃ ଦେବୀ ପ୍ରସନ୍ନ ପଟ୍ଟନାୟକ, ଡ଼ଃ ନରେନ୍ଦ୍ର ନାଥ ମିଶ୍ର, ଶ୍ରୀ ବୃନ୍ଦାବନ ଚନ୍ଦ୍ର ଅଗ୍ରୱାଲ, ଶ୍ରୀରାଘବାନନ୍ଦ ନାୟକ, ଶୁଭାକାଂକ୍ଷୀ ଶ୍ରୀ ଭବଗ୍ରାହୀ ମିଶ୍ର ଶ୍ରୀମତୀବେଲା ରାଣୀ ଗୁହ, ଶ୍ରୀ ପ୍ରଭାକର ପ୍ରଧାନ, ଶ୍ରୀ ଅଭିନ୍ନ ଚନ୍ଦ୍ର ସାହୁ, ଶ୍ରୀଗଗନେନ୍ଦ୍ର ନାଥ ଦାଶ, ଶ୍ରୀ ଉଦୟ ନାରାୟଣ ଜେନା, ଶ୍ରୀ କମଳା କାନ୍ତ ଲେଙ୍କା, ଶ୍ରୀ ଇନ୍ଦ୍ରମଣି ପ୍ରଧାନ (ଦାର୍ଜିଲିଂ), ଶ୍ରୀ ଶଚୀନ୍ଦ୍ର ନାଥ ଗାନ୍ଧୀ, ଶ୍ରୀମତୀ କମଳା ସାହୁ, ଶ୍ରୀ ବ୍ରହ୍ମାନନ୍ଦ ସିଂହ, ଶଶାଙ୍କ ଶେଖର ହୋତା (ସିଂହଭୂମି), ଶ୍ରୀ ଶ୍ରୀନିବାସନ୍ କୃଷ୍ଣନ୍ (ବାଙ୍ଗାଲୋର)ଙ୍କ ନିକଟରେ ଆଜୀବନ ଋଣୀ ରହିବି ।

ମୋର ସାଙ୍ଗ ଶ୍ରୀ କିଶୋରୀ ମୋହନ ଦାସ ପ୍ରକାଶର ଭାର ବହନ କରିଛନ୍ତି । ସ୍ନେହର ମୋହିତ କୁମାର ପାଣିଗ୍ରାହି ମୋର ଫଟୋ ଶିଳ୍ପୀ । ପୁନଶ୍ଚ ଶ୍ରୀ କିଶୋରୀ ମୋହନ ଦାସ ପ୍ରଚ୍ଛଦପଟଟି ବହୁ ଯତ୍ନର ସହିତ ସଂପୂର୍ଣ୍ଣ କରିଛନ୍ତି । କଲିକତାର 'ଓଡ଼ିଶା ଆର୍ଟ ପ୍ରେସ୍‌ର ସହୃଦୟ ମେନେଜର ଶ୍ରୀ କିଶୋର ଚନ୍ଦ୍ର ପଟ୍ଟନାୟକ ମଧ୍ୟ ଯତ୍ନ ସହକାରେ ଛାପା ଶେଷ କରିଛନ୍ତି । ସେମାନଙ୍କ ନିକଟରେ ମୁଁ ଚିରକୃତଜ୍ଞ ।

ପ୍ରସନ୍ନ
ଶାନ୍ତିନିକେତନ

## ।। ୧ ।। ସ୍ୱର୍ଣ୍ଣଦ୍ୱୀପର ବାର୍ତ୍ତାବହ

ଫୁଲ୍ ଫୁଲ୍ ବହିଯାଏ ବାଆନ୍ତି,
ଖେଳିଯାଏ ବପିନରେ ଏ ଜୀବନ-ସପନର ମହକ
ଫେଲିଯାଏ ପାଲ ଟାଣି ନାଅଟି ।
ନଈଘାଟ ଅଟକାଇ କହେ—"ତୁମେ ଯାଅନି
ଟିକେ ରହି ଶୁଣିଯାଅ ଅତୀତର କାହାଣୀ,
ରଖିଛି ମୁଁ ବହୁକଥା ମରମେ
କେହି ତ ରହିଲେ ନାହିଁ, କାହାକୁ ବା କହିବି ?
କେହି ବି ଅସିଲେ ନାହିଁ ଭରମେ ।"
ନାବ୍ୟା ଏ ପ୍ରବାହିନୀ ନାବିକ ମୁଁ ଅଟେରେ,
ସୂର୍ଯ୍ୟର କୂଳପର ତରଣୀ ମୋ ଛୁଟେରେ,
ଓପ୍ରେୟସୀ ଅଣିଛି ମୋର ଜୀବନରେ ଛନ୍ଦ
ଅନ୍ତରେ ଅନୁଭବି ପ୍ରଗତି ଅନନ୍ଦ ।
କଣି, କଣି, ମାଛ ମୋର ନଈକୂଳ ଜନତା,
ମିରକାଳି ଖୋଇ ନୁହେଁ ଅବା ମୀର, ପବତା,
ମିଳେ ଏକା ସଇ-ସୁନା ଦ୍ୱୀପରେ,
କାତ ନାହିଁ, କଣ୍ଟାନାହିଁ ଅନ୍ଧାରେ ଜାଳେ ସୁନା-ଦୀପରେ ।
ଏଇ ଶୁଣ— ବାଜି ଉଠେ ପୀରତିର ମୃକତିର ଅଳତିର ଘଣ୍ଟା,
ଅହ୍ଲଲର ଡେଣା ମୋର ନାଚି ଉଠେ ଗରବେ,
ଛଳ-ଛଳ—ଛଳ ଛଳ ନାଅ ଯାଏ ଖାଲ୍, ଡିପ ପହଁର
ଗୌରବେ ପାନଛର ପୃଥିବୀର ଗୌରବ ଅସବେ ।
ପଣିପ୍ସୁର ନିଧୁବନ ମୋତେ ଆଜ କରଅଛୁ ସତ୍ୟର ସାରଥି,
ରାବଣର ରାଜଧାନୀ ଭାଙ୍ଗିବ ବୈଦେହୀ ପାଇଁ କି ;
ପ୍ରଳୟର ଟଙ୍କାର, ବଜ୍ରର ଝଂ-କାର,-ଅମା-ରାତ ଭୁଲିବ
ଅସୁ ଯେତେ ଧୂର୍ତ୍ତି, ପର୍ବତ ଊର୍ମି,
ନାଅ ମ୍ୟୋର ଡରେ ନାହିଁ ତହିଁ କି ॥

୩ । ୯ । ୬୧
ଶାନ୍ତିନିକେତନ

## ॥ ୨ ॥ ଆଲେଖ୍ୟ

ନିଶୀଥ ଚନ୍ଦ୍ର ଚନ୍ଦ୍ରିକା ଦିଏ ଢାଳି
ରଜନୀ-ଗନ୍ଧା, ହାସ୍ନା କାମିନୀ ହାତେ,
ଗୋଲାପ-ବଧୂର ଜଳ ଛଳ ଛଳ ଗୋଲାପି ଓଢଣା ଖୋଲି
ଅସୀମ ଦିନର ଅଶିଖ ବେଦନା ଢାଳନ୍ତ ଜୀବନେ ଭରି
କୁସୁମ ଫୁଟାଇ ସୁଷମ କରେ କି ସତେ ?
ମଦର ମମତା ଛାଡ଼ି ପାରି ନାହିଁ ଉର୍ବଶୀ ତନୁ ନାଶି
ଯୁଗେ ଯୁଗେ ଖୋଜେ ଚନ୍ଦ୍ର-ପ୍ରତିମା ରୂପ ସୁରଧାମୀ ଧରି
ଦକ୍ଷ ପ୍ରଥମ କନ୍ୟା
ସ୍ୱର୍ଣ୍ଣ ନଦୀର ବନ୍ୟା
କୁସୁମ ସଭାର ସଭାପତି ଦେଖି ନିଜକୁ କରନ୍ତି ଧନ୍ୟା ।

ସଫଳ ଦଇନ, ଭୟୂର ଜହର ଶିଖର ସମାନ ପିଇ .
ଜ୍ଞାନ, ବିଜ୍ଞାନ ଅମା ଅଜ୍ଞାନ ବଢ଼ଯାନ ଢାଳି ନାଇଁ
ନିଶା-କନାମୀର ପତି
ଶୁଣାଏ ଜୀବନ ଗୀତ,
ଭୁଲେ ଅମୃତ ଧନୀ ଦମ୍ପତି—ଶିହରେ ପୁଷ୍ପବତୀ
ନିଶୀଥ ଚନ୍ଦ୍ର ଗୁରୁ ଗୌରବେ ଗୃହୁ ଚନ୍ଦ୍ରିକା ଢାଳେ
ଥକାଇ ଫୁଲର ଗୀତ ॥

୧୯୫୭
ବାଲେଶ୍ୱର

## ।। ୩ ।। ଜଳକ୍ରୀଡ଼ାର ସୁଆଗ ଭଙ୍ଗ ସଜନୀ !

ଜଳଖେଳର ଏ ସୁଆଗ ଭଙ୍ଗ ସଅଳ,
ସଞ୍ଜ ଗଗନେ ରଙ୍ଗ ଫଗୁର ଅବିର ଫୁଆର ଛଳ
କୋଳ ଖେଳ କଥା ଭୁଲି ଯାଅନାହିଁ ବଉଳ !

ମିଠି ମିଠି କରି ନିମିଷେ ଫୁଟିବେ ସରଗ ଜହ୍ନିଫୁଲ
ଉଦ୍ୟାନ ଜଳ, ଚମ୍ପା କନକ ନହେବ ତାହାର ତୁଳ,
ଫୁଲର ବେଣୁରେ ଫୁଲକୁ ଡାକିବ ଜୀବନରେ ସୁର ଦେଇ
ପତରେ ପତରେ ଡକା ପଡ଼ିଯିବ ରଜନୀ ଆସିଲା ଏଇ,
ମାଟେ୍ି ମାଡେ଼ ଘନ ସଭ୍ୟତା ରତନ ପ୍ରଦୀପ ଉଠିବ ଜଳି
ଚେତଣାରେ କ୍ଲାନ୍ତି ଦବଜ ଭ୍ରାନ୍ତି ଦଣ୍ଡକେ ଯାଇ ଭୁଲି
ଉଦାର ବତାସି ଆସି,
ନିଭାଇ ପ୍ରଦୀପ ଲୁଚାଇ ଦେବ ସେ ବାହ୍ୟ ପୋଷାକ ରାଶି ।

ଜଳ ଖେଳର ଏ ସୁଆଗ ଭଙ୍ଗ ନାରି !
ଲେଉଟି ଗଲଣି ପ୍ରଭାତୀ-ନାଗରୀ ମୁନାର-ଗଗରୀ ଧରି,
ଫାଟି ପଡ଼ିଲଣି ପ୍ରାଚୀର କବରୀ ଦାଗ ଶାଢ଼ୀ ଧଡ଼ି ଛୁଇଁ
ଆଉ ହେବନାହି ରହି,
ଘର ଗୋଠାଯାକ ଝାଡ଼ି ଦେଇଥିବେ ମୋତେ ଖୋଜି ଖୋଜି ବଉଳ ।
ଧାନ ଫୁଲ ମୋର ଖୋଷାରେ ଖୋସିବା ପାଇଁ ।

ଯୁବତୀ ଜୀବନ ନାହିଁ ଅବସାଦ କ୍ଲାନ୍ତି
ଘେନି ଆଷାଢର ମୃଦର ମୃଦାଳ ଭ୍ରାନ୍ତି,
ପ୍ରେମରୁ ସୃଷ୍ଟି, ପ୍ରେମହିଁ ଜୀବନ-କାମ୍ୟ
ସତୀ ଶତାନଳ ପୀରତରେ ଲଭେ ଶାନ୍ତି ।

ବାରିପଦା,
୧୯୫୮

## ॥ ୪ ॥ ଭାରତପଥେ କଲମ୍ବସ୍

କୃଷ୍ଣ-ଜଳଦ ଅଚ୍ଛୋଦ ବସିତ ମହାଗଗନର ପଥ
ଘନ ଅନ୍ଧାର ଗର୍ଜନ କରେ ରୁଦ୍ଧ ହୁଏ ମୋ ଶ୍ୱାସ
ଚପଳା ଝଲକେ ସାଗର ବକ୍ଷେ ଅକ୍ଷି ମୁଦ ହୁଏ ତଣ୍ଟି
ବାର ବାର କରେ ଦଂଶନ ମୋତେ ଉତ୍କ୍ଷେପ ଉପହାସ ।

ଜାଣିଥିଲି ଯାରେ ଜୀବନର ସତ୍ୟ ଉତ୍ତର ଦିଗେ ବୋଲି
ଯାର ଇଙ୍ଗିତେ ବାନ୍ଧି ସାହସ ବାହିଲି ବୋଇତ ମୋର
ସେ କଳ୍ପ ନିଷ୍ଫଳ ନାକେ କାଟି ଦେଇ ଦୁନିଆ ମାରୁଛି ତାଳି
ଅପମାନ ଆଜ ଦୁଃଖ ରଚିଛି ଜୀବନରେ ମୋର ଘର ।

ପଚୁଅର ସାଜି ଏକ ଏକକର ମତ୍ତ-ଲହରୀ-ମାଳ
ରଙ୍ଗ ଶିଶୁ ସମ ସୀମାର ଶିଖରୁ ସାଗରେ ପଡ଼ନ୍ତି ଡେଇଁ
ସ୍ରୋତରେ ଭାଙ୍ଗଇ ପାହାଡ଼ ଧକ୍କା ନାହିଁ ମୋର ହତଅର
ଜଳପକ୍ଷୀ ଡାକ, ସଂଗୀତ ଅବା ଶୁଣିବ ପାରେନା କାହିଁ ।

ଭାରତ ଯିବ ମୁଁ, ଭାରତ ଯିବ ମୁଁ, ଭାରତ ପଥିକ ସଖୀ ?
ସକଳ ମମତା ତେଜି ଅସିଅଛୁ ବିଫଳେ ନଯିବ ଦେଶେ,
ସଫଳ ହେବ ମୁଁ—ଅୟି ସ୍ୱର୍ଗୀୟା ! ବିଶ୍ୱାସ ଥାଅ ରଖି
ମୁଁ ଯାଉଛି ଏକ ନୂତନ ପୃଥିବୀ ନୂତନ ବିଶ୍ୱ ପାଶେ ।

ପାନ୍ଥ ଏ ରଜନୀ କରୁଛି ସ୍ୱାଗତ ଦଶିକୁ ପ୍ରଭାତ ନୂତନ
ସନ୍ତୁ ଏ ଯାତ୍ରା କମିଯାଉ ମୋର ଦିଗନ୍ତ ଠାରୁ ଦୂରତା
ଧୀର ଧୀର ହୋଇ ବହିଯାଉ ବାଅ ଫେନିଳ ଲହରୀ ସମାନ
ସ୍ୱପ୍ନ ଅନ୍ତରେ ମୋର ଉପସ୍ଥିତ ଭାରତବର୍ଷ ବାରତା ।

× × ×

ସାଧତାଳ ପାଣି ପଙ୍କ ଅନ୍ଧାର ପକ୍ଷତୀରରେ କାଟି
ଉଡ଼ି ଆସୁଅଛୁ ସୂର୍ଯ୍ୟ-ବିହଗ ଚଞ୍ଚୁ ତାହାର ନାଲି

ତଣ୍ଡିର ବଦନ ଲାଲ୍ ପଡ଼ଯାଏ ଅପମାନ ସହି ସହି
ଡାକେ ବି ଦାଖେନା ଭାରତ ପତାକା, ଭାରତ ବର୍ଷ ବାଲି ।
ସଭିଏ କହନ୍ତି ପାଗଳ ହୋଇଛି, ପାଗଳ ଅଟେ ମୁଁ ଜାଣୁ
ଦେବତା-ଚକ୍ର, ନରେ ମାଇବେ କି ? ଭାରତ ବର୍ଷ ସରଣୀ,
ଦୁର୍ଗମ ବଡ ଅନ୍ଧାର ବଡ଼ ଅନ୍ତ ନାହିଁ କାଳ ନାହିଁ
ମଣିଷ ପାରେନା ଜୀବନ ଉଜାଡ଼ି ଭେଦିବାକୁ ଧ୍ୟାନ ଧରଣୀ ।

ମୁଁ ବସିଛି କିନ୍ତୁ ଲକ୍ଷ୍ୟାର ସ୍ତମ୍ଭ ; ମେରୁର ଦମ୍ଭଧର ;
ହୋଇଥିବ ଗୃହଚ୍ଛି-ରୁଧିର ନଗାଡ଼ ସେକିଥ ଦେଖା ନାହିଁ,
ମନେ ଅଟେ ମୋର ସ୍ୱପ୍ନ-ନଗର ଉଜ୍ଜ୍ୱଳ ଅଧୀଶ୍ୱରୀ
ହସି ହସି କହେ—'ପାରିବୁ, ପାରିବୁ ଚାଲ୍ ଚାଲ୍ ଡର ନାଇ' ।

ଭାରତ ଯିବି ମୁଁ ସାତର ବିଜୟୀ, ଭାରତ ଯାଉଛୁ ସଜନ !
ଦେଖିବ ଅସରୋ ପ୍ରଣୟିନୀ ବଧୂ-ମଳୟ ରଥରେ ବସି
ହାତଧରି ମୋର କହାଇ ନିଅ ଗୋ ଜଣାନାହିଁ ମୋତେ ସରଣୀ
ଜୀବନେ ମୋହର ଯଉବନ ଭରି କହୁଦିଅ ଆସ ହସି ।
ମନେ କି ପଡ଼ୁନା ମୁହିଁ ସଞ୍ଜରେ କହୁଥିଲି ଥରେ—"ପ୍ରିୟ ହେ
ଭାରତ ଯାତ୍ରା କେଉଁ କୋଇଡରେ କେବେ କି ଆରମ୍ଭ କରୁଛ,
ସେ ଅଭିଯାନରେ ସାରଥି ହେବି ମୁଁ ସାଥୀ କରିନେବ କହ ହେ
ଦେଖିବି ଭାରତ, ଗୌରବ ପୁଷ୍ପ, ଦେଖିବି ସୁନାର ପାଉଛ ।"
ତୁମେ ନାହିଁ ଆଜି ବନ୍ଧୁହୀନ ମୁଁ ଏକାକୀ ଭାରତ-ଯାତ୍ରୀ
ପ୍ରାଣ ସ୍ୱପ୍ନ ତୁମେ ପକ୍ଷୀରାଜ ଚଢ଼ି ଦେଖିନାଅ ଅସି ଅକାଶୁ
ତୁମର କବଚ ତୁମର ମୂର୍ତ୍ତି ହୋଇଛି ମୋ ଗଳା ପଦକ
ପରୀକ୍ଷା ଏକ ନେଇଯାଉଛି ଅସି ଲକ୍ଷ ଲକ୍ଷ ବିଭୀଷିକା
ଊର୍ମି ସଂକୁଳ ମହାସାଗରର ବୃନ୍ତ ବୁକେ ମୋ ଜ୍ୱାଳିଛି
ଗୁଳିଛି ନମାନି ଘନ ଅନ୍ଧାର, ପ୍ରଭାତ, ପ୍ରଦୋଷ, ରଜନୀ
ଫେରିବି ଏଥର, ଫେରିବି ଏଥର ଠିକଣା କରି ମୁଁ ଭାରତ
ଉନ୍ମାଦ ମୁହିଁ, ଉନ୍ମାଦିନୀ ମୋ ଧନ୍ୟ ଯୌବନ ତରଣୀ ।

ବାରିପଦା, ୧୯୫୮

## ॥ ୫ ॥ ରୂପପୂଜା

ଅସଂପୂର୍ଣ୍ଣ କାବ୍ୟ ମୋର, ତୁମେ କି ସୁନ୍ଦରୀ !
ଦେବନାହିଁ କାବ୍ୟ-ରତ୍ନ ସଂପୂରଣ କରି ?
ଦାନଶୀଳ ଚପଳତା ବାଳିକା ସୁଲଭ,
ଚପଳତା କଲେ କେବେ କବିତା ସମ୍ଭବ ?
ଆସ ସଖି ବସ ପାଶେ ଶାନ୍ତ ଶିଶୁ ସମ
ତୁମର ପରଶେ ଫୁଟୁ କବିତା ସୁମନ
ତମେତ ଅଶୋକ, ମଲ୍ଲୀ ପଦ୍ମ, ଚମ୍ପା, ହେନା
ରାଣି ଅଛୁ, ଶୁଣି ମୋର ଦୁଷ୍କାମୀ କରନା ।

ବାରିପଦା, ୨୫।୩।୧୯୫୯

## ॥ ୭ ॥ ତୁଚ୍ଛ ଉପହାର

କୋମଳ ଫୁଲ କାହୁଁ ଅଣିଲ ବେଳା ପରେ ?
ଗୋଟାଏ ଆଣି ତଳୁ ପରଖି ନେଲି ହାତେ
ଫୁଲରେ ଅଛି ଢୋଲା ଦେହର ରଙ୍ଗେ ତାର
ଗଭାରୁ ଖସି କାଳ ପଡ଼ିଛି ସଇକତେ ?
ରକ୍ତ-ପୀତ ମିଶା ବରଣ କୁସୁମର
ରମ୍ୟ, ମାଂସଲ, କୁମାରୀ ଅବୟବ,
ମୁଗଧ କଲା ସିନା ନୟନ ମନେ ମୋର
ଜୀବନେ ଏ ଘଟଣା ପୂର୍ଣ୍ଣ ଅଭିନବ ।
ତରୁଣୀ ମଣି କଏ ଅସ ଗୋ ନଅ ଫୁଲ
କବରୀ ତେଜି ଅଜି-ଶୋଭିତ ବାଳପରେ

ମାନରେ ମୁଖ ତାର ଲାଲିମ ଦଶେ ବଡ
ଲଗାଇ ନାହିଁ ମୋର ଛାଡିଲା ବୁକୁପରେ
ଅସିବା ମୋର ଜାଣି କେହ୍ନୁ କି ସୁକୁମାରୀ
ଖସାଇ କବରୀରୁ ଭଙ୍ଗି ତ ଦେଲା ବୋଧେ
ଗୋଟାଇ ନେବି ଫୁଲ ଏ ବେଳା ବାଲୁକାରୁ,
ଲେଖିବି ତାର ଲାଗି କବିତା ପଦେ ଅଧେ
ଗନ୍ଧ-ମୃଗ ବାଲା ଦିଅଗୋ ଧରି ପାଶେ
କହ୍ନୁ ଓଗୋ ଯାଅ ମାନେ ଅଟେ ଏ ଫୁଲ କାର
କପଟ ଜାଣିବ ମୁଁ ହୃଦୟ ଶିହରଣ
ଏ ଶବ-ଫୁଲ ଗୋଟି ଦେଲି ଯା ଉପହାର ।

ନୀଳ ଆକାଶ ତଳେ, ନୀଳ ଏ ବୀଚିମାଳା
ଖେଳଇ ଦିଗଧାରେ । ଆସଇ ନୀଳ ସ୍ୱତ
ନୂତନ ଅତିଥି ମୁଁ-ବସିବା ସ୍ୱତ ସାଥି
ଅନ୍ଧାରେ ମୁହାଁ ମୁହିଁ-ନିଭାଇ ଦେହ ବତି ।

କୁସୁମ ଉପହାର ତୁଚ୍ଛ ହେବ ସିନା
ତେଇ ଦେଲି ହାତ ପାତି ନଜାଣେ ଯଦି ମୁହିଁ,
ବିରସ ମନେ ଏଥି ଫିଙ୍ଗିବ କୁସୁମକୁ
ପୀରତି ଅଶାମୋର ଅଶାରେ ଥାଉ ରହି ।

୭।୬।୫୯

ମାସ୍ତୁଲି ପଠମ୍

|| ୭ || ସ୍ମୃତି ସଂଜ୍ଞ

ବନାନ୍ତରେ ଝର ଝରେ

ଆକାଶରେ ନୂଆ ନାଲି ମେଘ

ନେଳି-ନାଲି ପ୍ରଜାପତି-ଫୁଲେ ଚୁମି ମଧୁ ନିଏ ଶୋଷି,

ସୁଲୁ ସୁଲୁ ଶୀତ ବାଆ

ହାଲୁକାଏ ହାଲିଆ ମନକୁ

ଧଳା ଧଳା ଘର ଅଡୁ କାନେ ଅପେ କେମ୍ପୁର୍ଖ ମୂର୍ଚ୍ଛନା

ଗୋଷ୍ଠ ଗୋଷ୍ଠ ସ୍ମୃତି କା'ର କେଉଁ ଏକ ଗୋଲାପି ଦିନର

ଛୋଟିଆ ଗୁଣ୍ଡୁଚି ମୂଷା ମଥାଟେକେ ଘାସର ଗହନୁ

ଚେନା ଚେନା ମେଘ ତଳେ

ଉଡ଼ିଯାନ୍ତି, ଛୋଟବଡ଼ କଳା ଧଳା ପକ୍ଷୀ ।

ହାୟ୍ମ ମୋର ମନେ ପଡେ ଥିବ ଥିବ ନାଲି ନାଲିକଥା

କଳା କଳା ଭ୍ରୂଳୁ ତଳେ ହରିଣୀର ଶିଶୁ ଆଖି ଯୋଡ଼ା ।

୨୬।୮।୧୯୫୯

ଶାନ୍ତିନିକେତନ

—

॥ ୮ ॥ ତଟିନୀ

କୁଅରର ହାତେ ତୁମେ ଠେଲି ଦେଲେ
ବୁଡେଇ କି ଯିବ,
ଫେନିଲ ଶବଦେ ତୁମେ ମନାକଲେ
ମନା କି ମାନିବ ?
ନୀଳିମାରୁ ଜନ୍ମ ମୋର
                    ଛୁଇଁବି ମୁଁ ଅନନ୍ତ ନୀଳିମା
ଅଲିଙ୍ଗନ କରମୋତେ
                    ତଟିନୀ ମୁଁ ନିଜକୁ ବୁଝେନା । *

୨୧।୯।୫୯
ଶାନ୍ତିନିକେତନ

॥ ୯ ॥ ବତ୍ସର

ଆଜି ମୋର ମନେ ପଡେ
( ତୁମର ବି ମନେ ପଡୁଥିବ )
ବଇକୁଣ୍ଠନାଥଙ୍କର ଦୀର୍ଘ ଏକ ଆବେଦନ ପତ୍ର
"ବନ୍ୟା-ବନ୍ୟା…ଚତୁର୍ଦ୍ଦିଗେ ପ୍ରଳୟ ପ୍ଲାବନ"
( ହୋଇନାହିଁ ତାହାର ବତ୍ସର )
ଦେଖି ଏଥି ବନ୍ୟା ଶବ୍ଦ ସମ୍ବାଦ ପତ୍ରର
ବଡ଼ ବଡ଼ କଳା କଳା ଓଡ଼ିଆ ଅକ୍ଷରେ ।
ପଢିଲି ମୁଁ କାଗଜ ଖଣ୍ଡରୁ—
ବନ୍ୟାରେ ଭାସିଗଲା ଘର,

* 'ନବଜୀବନ' ଫେବୃୟାରୀ ୧୯୬୧ ସଂଖ୍ୟାରେ ପ୍ରକାଶିତ

ପଲ୍ଲୀଗ୍ରାମ ଚଲ୍ ଖାଲ୍ ଢିପ
ରାସ୍ତା, ଘାଟ ସବୁ ଜଳମୟ ।
ଧାନ-ଧମି ଏକାକାର
ଘର ମେଷ ଗୋ-ଗୋଠ ପଙ୍କିଳ
ପ୍ରଳୟ-ପ୍ଲାବନୀ ସ୍ରୋତେ ବହନ୍ତ, ଭାସନ୍ତ ।
ମୋର କିନ୍ତୁ ମନେହୁଏ
ତୁମେ ବୋଧେ ବହିଁଅଛ ଆଜ
ଶତ ଶତ ବନ୍ଧ୍ୟାକ୍ଲିଷ୍ଟା ନାରୀ ପରି
ଭାସୁଅଛ; ଡାକୁଅଛ କାନ୍ଦୁଅଛ
ଲୋକଙ୍କର ଗନ୍ତାଘର ପାଇଁ ।
ବ୍ୟର୍ଥ ସେ କ୍ରନ୍ଦନ ।
ଯେତେବେଳେ ମହାନଦୀ ଫୁଲିଉଠି
ସମୁଦ୍ରର ପର୍ବତ ତରଙ୍ଗ
ମୁଣ୍ଡ ତୋରେ ବାନ୍ଧି ନେବେ
ଏକୀଭୂତ କରିବାକୁ ତମଧର କୋଟିଏ ଜୀବନ
ବିଶ୍ୱପତି ଗଡ଼ଦ୍ୱାରେ ପାଶେ;
ଭଙ୍ଗିବାକୁ ଠାଣିଙ୍କର
ଆମେ ତ ପାରିଲୁ ଧ୍ୱଂସି ' ବିଜ୍ଞାନୀର ପ୍ରଜ୍ଞା'
ସେତେବେଳେ ବିଶ୍ୱପତି
ସ୍ୱତନ୍ତ୍ର ଫାଇଲ୍ ଖୋଲି
ଆବେଦନ ପତ୍ରଟିର ସତ୍ୟତା ଖୋଜିବେ
"ସତେ, ସୃଷ୍ଟି ଆଜି ପ୍ରଳୟ ଉନ୍ମୁଖ !!!" ✱

ଶାନ୍ତିନିକେତନ ୨୨।୯।୬୧

✱ ପୂଜାସଂଖ୍ୟା 'ଗଣତନ୍ତ୍ର' (ତା ୯-୧୦-୬୧) ରେ ପ୍ରକାଶିତ ।

॥ ୯ ॥ ବରଣ

ଛୁଇଁଦେଲ ବଧୂଲାଟେ ଝାଉଁଳିଲା ଲାଜକୁଳୀ ଲତା ।
କୃଷ୍ଣଚୂଡ଼ା ହସର ବନ୍ୟାରେ
ଶିର ଶିର ଥରେ ଝାଉଁବନ,
ପରଶର ଉତ୍ସେ ଧାଇଁ ଲୁଚିଗଲେ ଚପଳା ମୃଗୁଣୀ ।
ଶର-ବିଦ୍ଧ ମୀନ ଚାହେଁ ଗୃଧ୍ର
ପ୍ରଣୟର ଡାଳଧରି
ଜୀବନର ଅର୍ଘ୍ୟ ଭରି-ବିକମ୍ପିତା ବନ୍ଦିତା ବୈଦେହୀ
ବିଜୟୀ ପାର୍ଥରେ ଦେଲା ଭଲଗ୍ନ ଭକ୍ତତା ।
ଫୁଟିଲା ଅଫୁଟା ଫୁଲ ଲତାର ତୋରଣେ,
ତାଳିକର ରଣ ଯେବେ ଲାଗିଥିଲା ଉମଙ୍ଗା ଓ

ଜ୍ୟୋତ୍ସ୍ନାର ବିବାଦ
୭।୯।୫୯
ଶାନ୍ତିନିକେତନ

॥ ୧୧ ॥ ତୃପ୍ତି

ଦେଖୁଛ···;ଦେଖ୍ ଏ ଗୃହ

ତୁମେ ଥରେ ଆଜି ଲାଗି ଆସ

ହସୁଛ···, ହସ ଏ ଘର

ହସୁଥାନ୍ତୁ କଇଁ, ରୂପାକାଶ ।

ଖୋଲିଦିଅ କଳା ବେଣୀ

ହଲଜଡ୍ ବେଶ ପିନ୍ଧନିଅ,

ଅଙ୍ଗେ ଅଙ୍ଗେ—ଜଡୁ ଜ୍ୟୋତ୍ସ୍ନା ।

ଦୈନ୍ୟ,

କ୍ଲେଶ,—ସବୁ ଭୁଲିଯାଅ ।

ଯଦି କେହି ଶାପ ଦିଏ—

“ମୃତ୍ୟୁ ମୋର ପାହିଗଲେ ରାତି”

ତୃପ୍ତ ମୁହଁ,

କହିବନି—“ଦବା ଲୋକ ନ ଦେଖୁ ଧରତୀ”

୧୪-୧୦-୫୯

ଶାନ୍ତିନିକେତନ

## ॥ ୧୬ ॥ କବିତାଟି ରଖିବ ସାଇତି

ନିର୍ଜନ ସେ ସୁନେଲି ମୁହୂର୍ତ୍ତ,—ବିବର୍ଣ୍ଣ, ସ୍ୱପ୍ନିଳ
ନାସ୍ତିକଙ୍କୁ ଗୋଲାପଟି ଯେବେ
ଫୁଟୁଥିଲା ରଙ୍ଗ ଢଳିସାଇ ;
ତମ କାନ୍ତି, ପ୍ରୀତି, ସ୍ନେହ ମୁକ୍ତିକାମୀ ପ୍ରାଣର ଆକାଂକ୍ଷା
ଛନ୍ଦମୟ ଜୀବନର ଅନୁଭୂତି ମାନ, ଅଭିମାନ
ମାଟିର ସମସ୍ତରାଗ,
ରଜନୀର ଜ୍ୟୋତ୍ସ୍ନା ଓ ତମସା ;
ଆକାଶର ଧ୍ରୁବଫୁଲ—ଖେଳାଳୀ ମୃଦର
ଫୁଲଙ୍କର ପାଖୁଡ଼ାର ରକ୍ତିମ ପୃଷ୍ଠାରେ ,
ହୃଦୟର ନିଭୃତ ନିର୍ଝରୁ
ଝରି ଝରି ପଡ଼ୁଥିଲା କାମନା ଓ ବେଦନାର ଅଶ୍ରୁ ମୁକ୍ତା ବିନ୍ଦୁ ।
ତମହାତେ ଅର୍ପିତ ଆନନ୍ଦେ
ପାଇଛି ଉଦାର ସ୍ପର୍ଶ ସ୍ନେହୀ ଏକ ଉଷୁମ ଗ୍ଳତରେ ।

ମୁଁ ଏକ ଚଢ଼ୁଆ ଖୋଜେ
ଅହର୍ଯାମେ ଡାଳ ଡାଳ ନୀଡ଼ ନୀଡ଼ ବୁଲି
ଅଜ୍ଞାତ ବାସିନୀ ମୋର ବିରହିଣୀ ପ୍ରିୟା ;
ଖାଲି ଏକ ବାତୁଲତା ପରା !
ଭାଙ୍ଗୁ ବା ନଭାଙ୍ଗୁ ଏହି ପାଷାଣ ପାଚେରୀ
ସେ ଆମ 'ଗୋଲାପି ଗାଥା'
ଜାଣି ଅଛି, କବିତାକୁ ରଖିବ ସାଇତି ।

୨୨-୧୧-୫୯
ଶାନ୍ତିନିକେତନ

## || ୧୩ || ଅରକର ସ୍ମୃତ

ଭୂଷାର ଲାବଣ୍ୟ ଯିଏ
ବୁଝିଲି ମୁଁ—ଝଲ୍‌କିଲା ଯା ମୂର୍ତ୍ତିମତୀ ବାଳା
ଲେଖିଲା ଯା ମୋ ହୃଦରେ
ସେ ପାଗଳ ପିଙ୍କପର ପତାର ଛଟାରେ ।

ଶୂନ୍ୟକକ୍ଷ ଲକ୍ଷ୍ମାର ପିଞ୍ଜରୀ
ଗୋଟିଏ ବସନ୍ତ ଆଉ ବସନ୍ତୀଠେ ବାଥ ଶିଶୁ ପରି
ପଶ୍ଚିମର ରୁଦ୍ର ସୂର୍ଯ୍ୟ ଗୃହଁ
ତେଣା ପିଟି ଗାଉଥିଲେ
ଏ ସୀମିତ ଜୀବନର ପ୍ରଣୟର ଗାଥା ।

ତା ଅଧର ଲଜ୍ଜା ସେ ବୋଳିଦେଲାମୋର ଏ ଅଧରେ ।
କ୍ଷୁଦ୍ର ଏକା ହୃଦୟର ବତାସୀ,
ପ୍ରୀତି ଆଉ ସ୍ନେହର ଚନ୍ଦନେ
ବାସିତ ଯା ଅଙ୍ଗ,
ତୁଲ ପ୍ରାଣେ କଲା ପୁଲକିତ ।
ରୂପସୀର ଆଖି କୋଣେ ଫୁଟୁଥିଲା ତୃପ୍ତି ଅଉ ମମତାର ଫୁଲ ।

ଦୁଃଖ ମଥିତ ଏଇ ଜୀବନର
ଅମାପ୍ୟିତ ଅସୀମ ସୋପାନେ
ହୃଦର ସଳିତା ବଳି
ଜାଳି ଦେଲ ଯେଉଁ ସୁନା ଶିଖା
ଭୁଲି କି ପାରିବି ଅବା
ଜନ୍ମେ—ଜନ୍ମେ,—ଜୀବନେ ଜୀବନେ ?

୨୫ । ୧୧ । ୫୯ ଶାନ୍ତିନିକେତନ

## ।। ୧୪ ।। ଆହତ କଳାକାର

କବେ ତୁମେ କହ—
ଅଶ୍ରୁକଣ୍ଠେ କହୁ ଉଠ—“ବିପନ୍ନ ମୋ ରକ୍ତିମ କରବୀ
ଜୀବନର କଳି
ଗୋଧୂଳିର ରଙ୍ଗ-ହସ ସମ
ଧୀରେ ଧୀରେ ମୃତ୍ୟୁ ବରିନେଲ,
ଶୁଣ ଅହେ ନାଗଫେଣୀ ଅଶା
ଅନ୍ୟର ପ୍ରଭୁତ୍ୱ ଅଉ ନିର୍ଯ୍ୟାତନା ଉତପ୍ତ ନିଶ୍ୱାସେ ।”

ମଲା କଳି ଫୁଟିବାଟା ମିଛ,
ଗଲା ସ୍ୱପ୍ନ ସ୍ୱପ୍ନେ ବି ମିଳେନା ।
ଛିନ୍ନ ରଜ୍ଜୁ ଯୋଡ଼ି ପୁଣି ଏକକ କରିବା
ମଣିଷର ବୃଥା ପାଗଳାମି ।

ବହେ ଝଂଜା, ମାଡ଼ିଆସେ ବନ୍ୟା
ଡାକେ କାଳ ସ୍ରୋତ,
ତଥାପି ମୁଁ ରୂପ ଦିଏ ବିଗତ ସେ
କେଉଁ ଏକ ରଜତ ଜ୍ୟୋତ୍ସ୍ନାର,
( କେବଳ ମୋ ପ୍ରିୟାର ପ୍ରେରଣା )
ଭଗ୍ନ ତୁଳିକାରେ;—ବିକୃତ ହେଲେ ବି ସିଏ
ଦୁଇଗୋଟି ମିଳିତ ପ୍ରାଣର
ନିତ୍ୟ ନବ ସଂଧାର ସଙ୍କେତ ।

୨୬ । ୧୧ । ୫୯
ଶାନ୍ତିନିକେତନ

## ॥ ୧୪ ॥ ଶିଶିର ଚିନ୍ତା

ତୁମକୁ ଦେଖୁଚି ପ୍ରିୟା
ଏ ଶିଶିର-ସୁନ୍ଦର ବଦନେ
ଛଳ ଛଳ ମୁକ୍ତାଜଳେ ନୟନର ଚପଳତା ମୃତ
ଶିଥିଳ କୁନ୍ତଳ ଚୂନା ମୁନା ମୁଖେ ପଡ଼ୁଛି ଝାଉଁଳି
ଲଳିତ ପ୍ରବାଳ ଓଠେ ସାଗରର ଅହେତୁକୀ ଝଡ଼
ବିଷାଦର ଘନ କୁଜ୍ଝଟିକା ।

ଦୁଃଖ ଗୋ କରନା ବନ୍ଧୁ ଦୁଃଖ ସଦା ଆସୁଚି ଜୀବନେ
ଦେଖିନାଅ ରୂପମୋର ପ୍ରଦୀପ ଓ ମଞ୍ଜୁର ଶିଖାରେ
ପୃଥ୍ୱୀର ଅମରାବତୀ ଗଢ଼ି ଦିଅ ପାଇ ପାର ମୋ ଅଧରୁ ଚମା ।

ମୁହିଁକି ନୀରବ ଅଟେଗୋ
ଏବେଶାତେ ଦ—ପ୍ରଶାନ୍ତ ଜଣିଥେ ?
ସ୍ମୃତିରେ ସ୍ମୃତିଏ ବୋଧ-ବେଦନାର ମନ ପଡେ ଭାଙ୍ଗି,
କ୍ଷଣେ କ୍ଷଣେ ରୂପ ନିଏ ମନର ଉଦ୍ଭଟ କଳ୍ପନା ।

ଯଦିଗୋ ଜାଗିଚ ତୁମେ
ପ୍ରିୟା ମୋର ଶୋଇପଡ଼ ଏବେ ;
କ୍ଷଣିକ ଏ ଦୁଃଖ ସ୍ୱପ୍ନ—
କାଳ କାଳ ବିଚ୍ଛେଦରେ ପ୍ରେମ ମରେନା !!

୨୭ । ୧୨ । ୫୯
ମାନ୍ଦ୍ରାଜ ପଥରେ
ଟ୍ରେନ-ଗାଡ଼ୀ

## ॥ ୧୭ ॥ ଶ୍ରୀମତୀ

ବଉଳର ଗନ୍ଧେ ଅମୋଦିତ—
ବନପ୍ରାନ୍ତେ ଖୋଜିଥିଲି ଶ୍ରୀମତୀ ତୁମକୁ,
କଳ୍ପନାର ରଙ୍ଗମଞ୍ଚେ ବାସ୍ତବତା ଖୋଜିଲି ସମାନ
ଶୁଣିବାକୁ କଣ୍ଠୁ ତବ ପଦେମାତ୍ର ବେଦନାର୍ତ୍ତ କଥା
ସନ୍ଧ୍ୟାର ମଳୟ କାନ୍ତୁ ପତ୍ରକୋଣୁ କହିଥିଲା ମୋତେ—
—ଶ୍ରୀମତୀ ତ ଆସିନି ଏଠାକୁ !
ବିଜନ ବନାନ୍ତୀ ଧ'ରେ ପୋତିଥିଲି ମଥା ।

ଖୋଜିଥିଲି ତୁମକୁ ଗୋ ସ୍ୱପନର ନିର୍ଜ୍ଜନ ଗଳିରେ
କାଳେ କାହିଁ ଭ୍ରମୁଥିବ କ୍ଳାନ୍ତ ମନେ
ବସନ୍ତର ରଙ୍ଗା ରଙ୍ଗା ପୁଷ୍ପିତ ଉଦ୍ୟାନେ ;
ପାଇନି ମୁଁ ନବନୀତ ହାତ ।

ଆଜ ମୁଁ ଦେଖୁଛି ସଖି ! ,
ମୁଖେ ତବ ଲାଳିମାର ବିଦ୍ୟୁତ ପାବକ
ଲକ୍ଷମାନ କରେ ଭକ୍ଷ
ଅଭକ୍ଷ ଯା ଥିଲା କଳ୍ପନାର
ଧରି ଯୁଗ ଶତାବ୍ଦୀ ଶତାବ୍ଦୀ ;
ନଜାଣେ ମୁଁ—ବାସ୍ତବ କି ସ୍ୱପ୍ନର ଛଥିଲି ;
ତଥାପି ମୁଁ ସତ କହେ
ଏତେ ସ୍ନେହ, ଏତେ ପ୍ରେମ
ପାଇନି ମୁଁ—ପାଇନି କେବେତ !

୨୩ । ୨ । ୬୦ ଶାନ୍ତିନିକେତନ

।। ୧୭ ।। ବର୍ଷା

ଆକାଶ ଝମିନା ଯେବେ ବୃଜଦରେ ହୋଇଥିଲା ମଳା
‘ମୋଟର୍ ମେକାନିକ୍’ ଅବା କୋଲ୍‌ମ୍ୟାନ’ ପାଇଜାମା ପର
ଝରକା କବାଟ ପିଟି ସମୀରଣ କହୁଥିଲା ପାଶେ
ଆକାଶ ପୃଥିବୀ ଘେର-ମେଲ୍ ପର ବର୍ଷା ମାଡ଼ିଆସେ ।

ମିସ୍ ଲିଲି ମନ ଖୋଲି ଆନନ୍ଦରେ ପାଖେ ଥିଲେ ବସି,
କଳା ମୋଟା ଅରବୀ କମ୍ବଳ ଯେ ମନରେ ଭଙ୍କା ହେଲା ଅସି
ବନ୍ଧକର ‘ମ୍ୟାକ୍‌ମିଲନ୍’ ପ୍ରକାଶନ—ପୃଷ୍ଠା-ଦୁଗ୍ଧଫେନ
ମିସ୍ ଲିଲି ଅଖିମେଲି ଶଙ୍କାମନେ କରଲେ ଲେଖନ
କୁଞ୍ଚିତ କୁନ୍ତଳ ଦଳ ସତେ ଅବା କହୁଥିଲେ ଥର
ଏତେ ବଡ଼ ପଢ଼ାଟାକୁ ବର୍ଷା ଅସି ଦେଲା ନଷ୍ଟକର ।

ପାଠ କଥା ତାହା ମିଛ ସମସ୍ତ ଗଳ୍ପ ଗପି ଗପି,
ଗଣିତ କକ୍ଷର ବେଳେ ଗପ କଅଁ ଅସେ ଛପି ଛପି ।

‘କି ଦୁର୍ଯୋଗେ ଅସିଥିଲେ ମିସ୍ ଲିଲି ଝଡ଼ବର୍ଷା ନେଇ’—
ପଢ଼ାଘର ଗୁରୁକାନ୍ତ କହୁଥିଲେ ବସ୍ତୁସ୍ଥରେ ଗୁହୁଁ ।

୨୮ । ୨ । ୫୦
ଶାନ୍ତିନିକେତନ

## ॥ ୧୮ ॥ ଚାଲ ସଖି ! ଯିବା ଅନ୍ଧକାରେ !

ଅଇଲେ ମିଳଣି ମୋର—ହାତେ ହାତ ଗୁନ୍ଥି
ଯୋଜନ ଯୋଜନ ଦୂରେ ଚାଲ୍ ଯିବା ଅନ୍ଧାର ତଳକେ
ସୂର୍ଯ୍ୟ ଶିଖା ଦେଖେନା ଯହିଁକି,
ପତଙ୍ଗ ନାହିଁ ତାଷ ଝୋଟି, ଚନ୍ଦ୍ରର ଅଳପନା ।

ଦଣ୍ଡିବନି ମୁହଁ ଦହୁ, ଗୋଲାପର ଲୋଭଣିଆ ଓଠ
ମରିଯିବ ପଲାଶ ରୂପଟା ।

ଅନ୍ତରେ ଅନ୍ତର
ହୃଦୟେ ହୃଦୟ—ହେବେ ଚହ୍ଲା ଚହ୍ଲି
ମିଳିଯିବ ଶୁଦ୍ଧ ପରିଚୟ ।

ରହିଯିବ! ମୀଡ଼ ବାନ୍ଧି ତହିଁ ଚିରଦିନ ।

୬ । ୩ । ୬୦ ଶାନ୍ତିନିକେତନ

## ॥ ୧୯ ॥ ନୂତନ ପଥିକ

ବାଜରେ ଝେଲଙ୍ଗି ଧୀରେ ବାଜ
ରଥ-ଚକ୍ର ଭେଦନି ମେଦିନୀ ;
ବଉଳର ରେଣୁ ଯେବେ ପଡ଼ିଲାଣି ଝରି ମୋ ଅନ୍ତରେ
କୋକିଳ ନୂତନ ସୁରେ ଗାଏ ଦେବାଶିଷ—
—"ଅତୀତକୁ ଫିଙ୍ଗିଦିଅ ନବ ଅଚ୍ଛାଦନେ
ଅଟିଁଛୁ ମୁଁ, ନୁହେଁ ସନ୍ଧ୍ୟା ନୁହେଁବ ପ୍ରଭାତ" ।
ତରୁଣୀ କେ ଦେବାନିଶି ସୁଖ-ସ୍ୱପ୍ନ ଦେଖେ—
"ମୁଁ ଏକ ଜ୍ୟୋତିର୍ମୟ ପଥବାହେ ଉତ୍ତାଳ ତରଙ୍ଗେ" ।

କିଏସେ ଆସିବ କିଏସେ···?

କନ୍ୟା···?

······ଝିଙ୍କ···?···ଅବା

ଘାସର ଗୁଙ୍ଗୁଡ଼ି ?

ଅଶୋକ ?  କାଞ୍ଚନ ?  ପଦ୍ମ

ତଥାପି ଗଢିବ ମୂର୍ତ୍ତି ଦୁର୍ଗମୋର ବାଗାନର ତଟେ,

ପୋଡ ମେଲେ ଆଗକୁ ଆଗକୁ ।

କେ ଯେ ମୋତେ ଭଲପାଏ,—ସ୍ୱପ୍ନ ଦେଖେ

ସୁଖ-ସ୍ୱପ୍ନ ଦେଖିବା ଆଶାରେ

ତା ସ୍ୱପ୍ନର ଶେଷ କେବେ ?

ରଙ୍ଗୀନ ବେଣ୍ଟା ନୂତନ ମୁଁ ବସନ୍ତ ପ୍ରବେଶ

ଓଡଣୀରେ ଭେଲିଙ୍ଗି ତୁମ୍ଭ ବାଜ ଉଠ

ବାଜଉଠ ଧୀରେ,

ରଥଚକ୍ର ଭେଦନା ମେଦନୀ ।

୬ । ୪ । ୬୦
ଶାନ୍ତିନିକେତନ

## ॥ ୨୦ ॥ ଆଉଥରେ ମୋତେ ଡାକ

ଥରଟିଏ ଡାକି ଚୁପ୍ ରହିଲ କିଆଁ
ଆଉଥରେ ଡାକ ମୋତେ
ଯାର ମିଠା ସେଇ କୋମଳ ମଧୁର ସୁର
ଛୁଇଁଲା ମୋ ମନ ସତେ ।

ନାଚୁଛି ତୁମର ସରୁ ସରୁ କଳା ଭୃରୁ
ଖେଳାଇ ତୁମର ଚଞ୍ଚଳ କଳା-ଡୋଳା
ଲହଡ଼ାଇ ତୁମର ରେଶମୀ ପଣତ ନୀଳ
ହଂସ ଚାଲିରେ ଆଉଥରେ ପାଖେ ଆସ
ଦେଖିବି ତୁମର ପାଦ ଚାଲିବାର ଛଟା—
ଏକ ଗୋଲାପର ହସ ।

ହାତେ ଧରି ସରୁ କାଳିଆ ବେଣୀରୁ ପଟେ
ଫାଇଲ୍ ବା ବହି ଯେତେବେଳେ ଯାହା ଜୁଟେ
ବାଜୁଥାଉ ତୁମ ପଣତ ଗୋଟାଏ ମୋ ଦେହେ
ଲାଲ୍ ପଡ଼ୁଥାଉ ଶଶୀ-ନିନ୍ଦିତ ମୁଖ
ଲାଜ ଲାଜ ହୋଇ ଆଉଥରେ ମୋତେ ଡାକ ।

୨୦ । ୭ । ୬୦
ଶାନ୍ତିନିକେତନ

## || ୨୧ || ଜ୍ୟୋସ୍ନା

ଦେଖିଛି ତୁମକୁ ଅଗୋ
ବର୍ଷାଭିଜା ଧୂସର ବେଶରେ
ଅବା କେବେ ପଛା ପଛା ବଶଦ ଶଦରେ
'ଇନ୍ଦ୍ର ଧନୁ' ଶାଢୀର ସାଜରେ
ରମ୍ୟ ଉପବନେ ।

ତୁମେକି ଦେଖିନ ମୋତେ
ସହକାର କୁଞ୍ଜେ, ଅବା, ବକୁଳ ବୀଥିରେ
କେବେ କି ବୁଝିନ ସଙ୍କ !
ମୋ ଅନ୍ତରର ପ୍ରଣୟ ପିପାସା
କେବେ କି ଗୃହିଁନ ମୋଠ
ସ୍ୱପ୍ନେ,
ସଂଗୋପନେ ?

ତୁମେତ ନେଇଛ ଜନ୍ମ କଳା ଧଳା ମେଘର ପାହାଡ଼ୁ,
ବିଦ୍ୟୁତ ଝରଣା,
ତୁମେତ ଫୁଟିଛ ଫୁଲ, ପଦ୍ମାସ୍ମିତ କରବଷ ସରସୀର
ପଙ୍କର ଜଠରୁ ।
ତୁମେ ଗୋ ପାଇଚ ରୂପ
ଜାଳି ଦେଲ ଦୀପ—ମୋର ଏ ଅନ୍ତର
ଅନ୍ଧକାରେ…।

ଉତ୍ପାଟି ନବଗୀ ପଥ ତୁମେ ଯେବେ ଗୁହ୍ମୁଁ ବାର ବାର
କସ୍ତୁରୀ-ଝିଗଲ ଡୋଳା ଚଳାଇ ଚଅଁଲେ,
ଗୋଟିଏ ପଲକେ ଅଗୋ,
ନିରେଖେ ମୁଁ ବିହ୍ୱାନ ପଲକେ
ତୁମର ଅନ୍ତର ପଟେ
ଖେଳେ ସେଇ ଡୋଳାର ଦୋଳରେ ।
ଅହ୍ଲା ଅହ୍ଲା କୁସୁମ ଦୋଳରେ ।

ତୁମେ ମୋତେ ଭଲପାଅ, ଭଲପାଅ
ନୁହେଁ ଖାଲି କମ୍ପିତ ଅଧରୁ
ମୋ ମୂର୍ତ୍ତିର ଶିବରୂପ ଦେଖିଛି ମୁଁ ଅନ୍ତରେ ତୁମର
ବାରେ ନୁହେଁ, ଶତବାର
ଫୁଟିଛି ମୁଁ ତୁମ ପଦ୍ମମାରେ
ପୀରଥର ସୂର୍ଯ୍ୟ ଯେବେ
ଦେଖା ଦିଏ ନୀଳ ନୀଳ ପାହାଡ଼ର ତଟେ
ଛୁଇଁ ଛୁଇଁ ତାଳ, ଗୁଆ, ନାରିକେଳ, ଖଜୁରୀ ଗଛକୁ ।
ମୋ ଅନ୍ତର—ମର୍ମ୍ମର କକ୍ଷରେ
ସଫେଦ ପଣତ ମର ଉଡ଼ି ଫର ଫର
ତୁମେ ଅଗୋ ଦେଇଛ ଚୁମ୍ବନ
ବହୁବାର ।

୧୪ । ୭ । ୬୦
ଶାନ୍ତିନିକେତନ

## ॥ ୨୨ ॥ ଜଳିବ ଦୀପାଳୀ ଜାଳିବା ଆମେ

ଅସ୍ତ ରବି ।
ଛବି ଭଳି ଜଳିଗଲା ଅନ୍ଧାର ସନ୍ଧ୍ୟାରେ
ତୁମେ ମର୍ମାହତ
ଏବର ଏ ଉପକାର କରୁଣ ମୃତ୍ୟୁରେ ।
ତୁମେ ଅଜ ଶୁଣାଅନା କ୍ରନ୍ଦନର ରୋଳ
ଲୁଚାଇ ଦିଅ ଅଖିର ଲୋତକ ।
ନାସି, ସାଥୀ—ସହଚରୀ
ସଜାଅ ସଜାଅ ମୋତେ
ଲଢ଼ାର ସାଞ୍ଜୁରେ,
ହାତରେ ଖଡ୍‌ଗ, ବର୍ଚ୍ଛା, ଢାଲ
ସ୍କନ୍ଧରେ—ଧନୁ ଓ ତୂଣୀର ।
ଧଳା ଓ ଲାଲ୍ ଘୋଡ଼ାରେ ବସି
ଆମେ ଯିବା ଦେଶ ଜୟ କରି ।
ହାତରେ ବୈଜୟନ୍ତୀ
ବଦନରେ ପ୍ରଶାନ୍ତି ।
ତୁମେ ବଜାଇବ ଜୟ ଶଙ୍ଖ
ବଢ଼ାଇ ଦେବ ତରବାରୀ
ପୋଛିଦେବ ରକ୍ତ, ସ୍ୱେଦ
ଭରିବ ଉତ୍ସାହ
(ଅସ୍ତରବି ଅଜ ପଛେ ନ ହେଉ ଉଦୟ)
ଫିଟାଇ ଦେବା ମେଘର ଫାଟକ; ଅନ୍ଧକାର
ନେଇ ଅସିବା ଆକାଶର ଚନ୍ଦ୍ର
ଦେଖିବ ତୁମେ, ଦେଖିବି ମୁଁ—
ଦେଖିବ ଦୁନିଆ ।
ତୁମେ ବଳିଦେବ ସଳିତା,
ମୁଁ ସଜାଇ ଦେବି ଦୀପାଳୀ,
ଜଳିବ ଦୀପାଳୀ—ଜାଳିବା ଆମେ ।

୩।୧୦।୬୦ ଶାନ୍ତିନିକେତନ

## ॥ ୨୩ ॥ ଆଖୁ

ଅଖୁର ବଣରେ ପଶି
ତୁମେ ସବୁ ଖାଉଅଛ ଅଖୁ
ପୁଣି ନୁହେଁ କାଟି କାଟି ପବ ପବ କରି
ଉଚ୍ଛିଷ୍ଟ ଛାଡ଼ିଚ ସବୁ ବଲୁଅର ପାଇଁ ।
ତୁମେ ନୁହଁ ତୀକ୍ଷ୍ଣ ଦନ୍ତ
ପବ ଅନ୍ତ ଗଣ୍ଠି ସହ
ଗୋଟା ଗୋଟା ଅଖୁ ଖାଇ ରସ ଶୋଷିବାକୁ ।
ଶୋଷିତ ମୁଁ ଅଖୁ ରସ
ଧୋଇତ ମୁଁ ଦେହ ଦୋରୁଅରେ ।
ଡରନାହିଁ—ଡରେନା କାହାକୁ
ଭାଙ୍ଗିଅଛୁ ଦାନ୍ତେ ମୋର
ପ୍ରତ୍ୟେକ ଗଣ୍ଠିକୁ ।
ତୁମେ ଗୃହଁ ପବ-ପବ ପ୍ରୀତି
ଜିହ୍ୱାର କ୍ଷଣିକ ଅଶା ।
ମୁଁ ଶୋଷିତ ପବ-ଗଣ୍ଠି ପ୍ରୀତି
ଅଶାର ପୂର୍ଣ୍ଣତା ପାଇଁ
ପ୍ରାଣର, ଦେହର ।

୧୦ । ୧୧ । ୬୦ ଶାନ୍ତି ନିକେତନ

## ॥ ୨୪ । ପ୍ରଣୟ ଲେଖ

ଗୋଟିଏ ଦେଖା,
ଗୋଟିଏ ରେଖା,
ଗୋଟିଏ ଲେଖା ।
ଲେଖାଟି ମୋର
ରେଖା ଉମର ।
ଦେଖା ଅମର ।

୨୪ । ୧୧ । ୬୦ ଶାନ୍ତିନିକେତନ

## ॥ ୨୪ ॥ ବନ୍ଦିନୀ

ବିଷାଦେ ପଡ଼ିଛ ଶୋଇ ଏଇ ଶାଳବଣେ
ଉଠ,—ଅଗୋ, ଉଠ
ମୁହିଁ ଯେ ଏକାକୀ ।
ପବନ ମର୍ମରେ ତୁମେ ଲେଉଟାଅ କଡ଼
ନୀଳ ନୀବି ସ୍ତ୍ରୀରଙ୍କ ଦେଖିକଥା ନଇକୂଳେ
ସତେ ଅବା ଲୁଚି ଶୋଇପଡ଼—
ଅଭିମାନେ ।

ଲତାଟିଏ ପଡ଼ିଛି ଝାଉଁଳି ।
ସୁନାକେଶ ଲୋଟୁଅଛି ନୀଳିମ କାଖିଲି ବୁକେ
ଖେଳ ଟଳି,
ସେ ଝାଲି ଝାଉଁଳି ପଡ଼େ ।

କାହିଁ—କେଉଁଠାରେ ତୁମେ ?
ମୋ ଲାଗି କାନ୍ଦୁଛ ବସି ଏ ପବନରେ !
ଖୋଜୁଅଛ ମୋତେ—କାହାର ମହଲେ,
ବଡ଼ ବଡ଼ ବନ୍ଧୁର ସନ୍ଧରେ, ପଦ୍ମିନୀ ପୁଷ୍ପରେ ,
ଦସ୍ୟୁନାହିଁ ଅନ୍ତର—ଦେଖୁଛ ମୋତେକି
କଳାର ଭିତରେ ଧଳା
ମୃତରେ ଜୀବନ୍ତ ।

ଆମ୍ରବଣେ
ତୁମେ ବୋଧେ କହୁଅଛ ବନ୍ଧନୀର କାନେ

ସମୀରରେ ଅତି ସଂଗୋପନେ—
—ମୁଁ ପ୍ରଣୟୀ ବଧୂର
ସାଥୀହଣ୍ଡ’... ।

କାନ୍ଦନା କାନ୍ଦନା ଅଗୋ
ଅଗୋ, କାନ୍ଦନା କାନ୍ଦନା
ଏଇ ଯେ ମୁଁ ତୁମ ପାଶେ
ଉଡ଼ାଉଛି ତୁମର କୁନ୍ତଳ,
ପଣତ ;
ଏଇଯେ ମୁଁ ତୁମର ବଦନେ ଲୋତକ ବିନ୍ଦୁରେ,
ସ୍ପନ୍ଦିତ ଓଠରେ,
ଅଙ୍ଗେ ଅଙ୍ଗେ, ପ୍ରତି ଅନୁଭବେ ।

କିଏ ସେ ବାନ୍ଧିଲା ଅଗୋ
ଫୁଲର ଡୋରରେ
ଅଗ୍ନାଯୁଗେ ;
ଏ ଯା'ର ବନ୍ଧନୀ
ଦେ୍ୟ ଏକା ପାରର ଖୋଲି ।

୨୫ । ୧୧ । ୫୦
ଶାନ୍ତିନିକେତନ

॥ ୨୭ ॥ ମାନବ

ସୁନା ଶିଡି ଚଢ଼ ଚଢ଼ ଡେଇଁ
ଟେଲଭିଜ୍‌ନ ହାଉସ୍‌ର ଅଗ କଳ୍‌ ସ୍ପର୍ଶ
ଏ ପୃଥିବୀ ଦଶିଲା ଟିକିଏ—
ବଢିଗଲା ଶୂନ୍ୟର ଅନ୍ଧାର
ନୂତନ ବେଦମନ୍ତ୍ର ଉଚ୍ଚ ଉଚ୍ଚାରଣେ
ହେଲ ସ୍ତବ୍‌ଧ ।

ମୁଁ ପୁଣି ପଢ଼ିଲି ଝପି
(ଏମିତି ମୁଁ ଝପେ ବେଳେ ବେଳେ)
ପ୍ରାଚୀନ ପ୍ରସ୍ତର ଯୁଗ ବନସ୍ତ ଭିତରେ
ସେ ଅନେକ ଅନୁଭୂତି
ସେ ବହୁତ କଥା—କହିବାକୁ ଲଜ୍ଜାଲାଗେ
କଞ୍ଚାମାଂସ ଖାଅ, ପଲ ପଲ କର
କାଟି କାଟି ଦାନ୍ତୁଆ ପଥରେ
ଲେଖିବ ଛୁଏନା, କବିତାରେ ।

ଯୌବନ ପତର ସବୁ ଝଡ଼ିଯାଏ-ଟ୍ରେନ ଚଳ ଅବକ୍ଷି ବାୟୁରେ
ରୂପର ତୃପ୍ତି ମେଣ୍ଟି ନାହିଁ—କାହାର ବି ;
ମୋର କି ମେଣ୍ଟିବ ?

୧୭ । ୧୨ । ୭୦
ଉକ୍ରସୂନ ପଥରେ

## ।। ୨୭ ।। ବସନ୍ତ ପୂର୍ଣ୍ଣିମା

ପ୍ରସିଦ୍ଧ ଓ ସେ ପାଠ ଶାଢ଼ୀ ଗ୍ରାମେ ଗ୍ରାମେ ସହରେ ସହରେ
ବିବୃତ ତାହାର ତୁମେ ଶୁଣିଥିବ ପତ୍ରିକା ପୃଷ୍ଠାରୁ
ଜାପାନ ପର୍ବରୁ ଉଡ଼ି ଆସିଚି ସେ ଭାରତ ପଶ୍ଚିମେ
ପୁଣି ସେ ଆସିବ କାଲି ।

ପ୍ରେମା ମୋର ଗୃହହୀନା ପଶ୍ଚିମେ ।
ପଶ୍ଚିମ ଅନ୍ଧାର ।
ଅନେକ ଦିନରୁ ତାର ବଗିଚାରେ ଫୁଲ୍ ଫୁଟିଲାଣି
ଜ୍ୟୋତ୍ସ୍ନା ଆସୁଚି ବୋଲି,
ଡେଉଁ ଡେଉଁ ନଈ ନାଳ ବଣ
ପ୍ରେମାର ଧରିଚି ପଥ ବରଷକେ ଆସେ ମାତ୍ର ଥରେ
ସ୍ଥଳରୁ ସ୍ଥଳକୁ ଡେଉଁ ଅଦ୍ଭୁତ ଖିଆଲେ ।

ମୁଁ କାଟିଚି ବାର ବାର
ଏ ଚନ୍ଦ୍ରକୁ ବିଜୁଳି ତାରରେ
କୁହେଳିର ଫେଣ ବୋଲି ତାକୁ କେବେ ଲାଳିମ କରିଚି ।
ଆଜ କିନ୍ତୁ ମୋ ସମ୍ମୁଖେ ଦୁଇଟି ଚନ୍ଦ୍ରମା
ଏକ ମର୍ତ୍ତ୍ୟେ ଅପରେକ ଗଗନେ
ତାହାର ମୁଁ ଗାଇବ ପ୍ରଶସ୍ତି ।

୨ । ୩ । ୧୯୬୧
ଶାନ୍ତିନିକେତନ

## ॥ ୨୮ ॥ ରାସ୍ତା

ମୋ ରାସ୍ତାର ଆଦି ନାହିଁ—ଅନ୍ତନାହିଁ,
ବୁଦା ବୁଦା ଅରମା ଜଙ୍ଗଲ
ଏ ସବୁ ଜମିଛି ଏଠି ରାସ୍ତାକଡ଼େ ଗଦା ଗଦା ହୋଇ ।

ମୋର ନୟନରେ କ୍ଳାନ୍ତି
ପ୍ରେମିକତାର ଭ୍ରାନ୍ତି
ନିଦ ଆସେ ରୂପସୀର ପଦ୍ମକଳି ହାତେ
ଯାତ୍ରାର ସୀମାନ୍ତ କାହିଁ ?

ଏ ଗଛ ମରୁକ ଏଠି
ମରୁ—ମରିଯାଉ,
ପ୍ରଭାତ ସେତୁରେ ଆମେ ପାରହେବା
ଜୀବନ ପାଇବା

ସରିଯାଉ ଯାତ୍ରା ମୋର ରାସ୍ତା ହେଉ ଶେଷ
ନୂତନ ଯାତ୍ରାର ହେଉ ନବ ଶୁଭାରମ୍ଭ ।

୨୪ | ୧୧ | ୬୧
(ବନ୍ଦେଲରୁ ଶାନ୍ତିନିକେତନ
ଫେରିଲାବେଳେ)

## ॥ ୨୯ ॥ ମିସ୍ ଶତପଥୀ

ଅୟି ମିସ୍ ଶତପଥୀ ! ଅଭିସାର ସାଜିଚ ନା କେବେ ?
ଶୋଇଚନା କେବେ   କା'ର ଅନ୍ଧକାର ଶାଳ ଜାଲ ତଳେ ?
ମନେଜ୍ଜୁଏ-ତମେ ଖାଲି ଡରି ଡରି ଯାଉଛ ଦଣ୍ଡକୁ
ସୂର୍ଯ୍ୟଙ୍କ ବୁଢ଼ିଲୁ ଅଗୁ ସାଙ୍ଗ ଖୋଜି ଅସିଚ ପଳାଇ
କାଳେ କେଉଁ କୁତ୍ସିତକ ଲାଗିପିବ ବାଟ ଅନ୍ଧାରରେ ।

ଯେଉଁ ତମ ସାଙ୍ଗେ ଅପେ ନାମ ତାର ବନଫୁଲ ବୋଧେ
ଯେଉଁଦିନ ମୋ ଫଟୋ ଦେଖି 'ଖୁବ୍ ଭଲ୍' କହୁଥିଲ ପଶ୍ଚି,
ହଠାତ୍ ସଂଧ୍ୟାରେ କାଲି ଝମଝମ ପଡୁଥିଲା ପାଣି
ସାଇକେଲ୍ ତେଜି ଦେଇ ହାତ ଟେକି ଦେଇ ନମସ୍କାର
ପାର୍କଟାରେ ଗଛତଳେ ନାଲିଟିଆ ମୁହଁ ସଞ୍ଜିକେଲେ
ଅଦିନ-ପାଣିରେ ଅମେ ଧୋଇହେଲୁ ପାଞ୍ଚୁ ପାଞ୍ଚ ଲାଗି ।
ଯା' ହେଉ, ଝିଅଟି ଭଲ ହେଲେ ପଛେ ଅଂଶିକ ହସ୍ତିନୀ
ରଙ୍ଗିଆ ବଦଳୀ ଭେଲା ବାହା ବାହା ଖେଳ ପାରେ ଭଲ ।

ମନେ ଅଛି ପାଞ୍ଚବର୍ଷ ତଳେ ବର୍ଷା ଦିନେ ବାଉ ଗାଡ଼ିଅରେ
ଗ୍ଲେଟିଆ କାଉଡେ ଧରି ବାହୁଥିଲ ବଦଳୀ ଜଙ୍ଗାଟା,
କହିଁଉ ଖୋଲିନ ଜମା, ସେଇଟା ଯା କଲି ହଇଷଣ
ଗୋଟାଯାକ ପଙ୍କ ହେଲି, ବାପା ମୋତେ ମାଇଲେ ଯେତେକ
ଥାଉ ଥାଉ ତମ ଅଗେ ଲାଭ ନାହିଁ କହି ସେ ଗୁଡ଼ାକ ।

ନଇଟା ବଢ଼ିଚି ଏବେ କେଉଁ ବୁଢ଼ୁ ଫେଣ ଅପେ ଭାସି
କନକ ଚଢ଼େଇ ଗୁଡ଼ା ମୋ ବସାର ଗୁହପାଖେ

ହେଉଛନ୍ତି ଏପାଖ ସେପାଖ,
କରେଇ ଜାଲ୍‌ଟା ଧରି ଜଗିଲେ ବି ମାଛ ପାଛ ପଡୁତ ନାହାନ୍ତି ?

ଅଗୋ ମିସ୍ ଶତପଥୀ, ଶରତର ରୂପସୀ ଗୃନ୍ଦନୀ,
ବସନ୍ତର ଶାଳଫୁଲ୍, ଚଇତର ରଙ୍ଗଣୀ ଶିଗ୍ରଷ !
ଏଇ ମୋର ଦୀର୍ଘଶ୍ୱାସ ଶୁଣୁଥିବ କବିତା ଭିତରୁ ;
ତମେ ଖାଲି ଶୋଇଥିବ,
ଯେମିତିକା ଶୋଉପଡ଼େ ଲଜକୁଳୀ ଅଛଅଢ଼ ଝିଅ
ରେଜେଇ ଭିତରେ ପଶି ଅନ୍ଧାରର ଅଙ୍ଗୁଳି ଗୁପାରେ
କଳାକାହ୍ନୁ ରଜାପୁଅ ମେଲେ ନ ଜାଣିବ କାହା ଘରଚୟୁ ।

କେତେଦିନ ଧରି ଖାଲି ମାଡିଥିବ ଛୁଞ୍ଚା କଥାଟିରେ
ମହୁଅ ମହୁଲ୍ ବଣେ କୋଇଲଟା ଯେମିତିକା ଗାଏ
ଦିନ ସାରା ରାତ ସାରା ଆଉ କିଛି କାମ ନାହିଁ ତାର !

ଯଦିଓ ପିନ୍ଧିଛ ଶାଢୀ ପନିକାର ଦୁଧଫେଣୀ ପୃଷ୍ଠା,
ଯଦିଓ ଗାଉଛ ଗୀତ ବେହେଲାର ପ୍ରଥମ ତାରଟିର,
ଅଙ୍ଗ କରି ତଳ ତଳ ସମସ୍ତଙ୍କୁ ଗୃହିଁ
ସିନେମା ଦେଖୁଚ ଅବା ବୁଲୁଅଛ ରକ୍‌ସାରେ ସ୍ୱସ୍ତାରେ,
ଦୁଇପାଖ ବଡଧାଡି କହୁଥିବେ ବହୁ ଅଖି ମେଲି
—'ଏଇ ମିସ୍ ଶତପଥୀ ଏଇବାଟେ ଯାଇଥିଲେ କାଲି' ।
କହିରେ କୋଣାର୍କୀ ନାରୀ ! ମହୋଦଧି ଫେନୋଚ୍ଛ୍ୱାସ କଣ୍ଠେ
"ବରଂ ଭଲ ଜଣଙ୍କ ସାଥୀରେ ରହୁଯିବା ସାରା ଜୀବନଟା" ।

୨୮ । ୩ । ୬୧
ଶାନ୍ତିନିକେତନ

## ॥ ୩୦ ॥ ବଷୁବ ନନ୍ଦନୀ

ସୁପ୍ରଭାତ, ସୁପ୍ରଭାତ ବଷୁବ ନନ୍ଦନୀ
ସୁପ୍ରଭାତ ଚମ୍ପା, ଯୁଈ, ରମା—ହେନା, ହାସ୍ନା ଡାଲିଆ, ମଲ୍ଲିକା ।

ବକୁଳ ବନର ଗ୍ଲଇପର
ଅଜମନ 'ଗ୍ଲଇ-ଗ୍ଲଇକିଆ ।
ମନପବନ ପାଦୁକା ନେଇଯାଏ ମଳୟ ଦ୍ୱୀପକୁ—
ଅନ୍ଧାର ନିବୁଦ ଘର
ଝରକାରେ ଲମ୍ବା କଳା ପର୍ଦ୍ଦା
ଗଜଦନ୍ତ ପଲଙ୍କର ଅଙ୍କ—
ସାବୁନ ଫେଣିଆ ଶେଯ ନୂଆ, ଘର ନୂଆ ;

ଭ୍ରମର ଜୁଡ଼ାର ମଉଳା ମଲ୍ଲୀ
ବଷୁବର ବାସ୍ନାରେ ବାସିତ ;
ଚଇତର ତାତଲ ନିଶ୍ୱାସ ଯାଏ ଅଜ ଅଟେ
ମୋର ଅଙ୍ଗେ ଅବୟବେ
ବୈଶାଖର ଧୂଳି-ଝଡ଼ ବାଜେ,
ଛୁଅଁ ନା, ଛୁଅଁ ନା ମୋତେ ବଢିଯିବ ଦେହର ଉତ୍ତାପ ;
ଶୀତଳ ଏ ସକାଳଟା ଏତେ ବଡ଼ ଜୀବନ ଅଗରେ ।
ଥଯୁଧର ଶୋଇପଡୁ ନିଃଶବ୍ଦେ ବେଦନା,
ତେତେବ ଯାଇ ଉତ୍ତାପ ବୃଦ୍ଧିରେ ଲୀଭଅଛୁ ବଷୁବ ନନ୍ଦନୀ ।

୧୪ । ୪ । ୬୧
ବଷୁବ ସଂକ୍ରାନ୍ତି
ଶାନ୍ତିନିକେତନ

## ।। ୩୯ ।। କଳା

'ନମିତା, ନମିତା ସତେକି ପାଗଳି ହୋଇଗଲ ତୁମେ ?'

'ନା, ହୋଇନି । ସେତିକି ବାଧେ ବାକି ।'

'ମୋ ଅତୀତ ଥରେ ଦେଖ ତେବେ ।

ଦେଖିବନି ?
ଆକାଶର ବିଶାଳତା
ସମୁଦ୍ରର ଗଭୀରତା—
ଦେହର ଉଷ୍ଣତା
ମୋର ଅନ୍ତରରେ ଜମାଟ ବାନ୍ଧିଛି ବୋଲି କହୁଚ ତୁମେ
ଆଜି କାହିଁକି ସବୁ ମୂଲ୍ୟ ହୀନ ?'

'ବିହଗ ବିହଗୀକୁ ସ୍ନେହ ଦେଇନି ।'

'ମିଛକଥା ;—ସାଗର ଢେଉ
ତଟିନୀକୁ ଫେରାଇ ଦେଇପାରେ ନମିତା ?'

"ହୁଏତ ପାରେନା । କିନ୍ତୁ—
ତରଙ୍ଗର ଧକ୍‌କା ଦେଇ ବାଲୁକାକୁ କଣ ନକରେ ସେ !"
"ସେଇଠି ଯେ ପ୍ରେମର ପ୍ରକାଶ, କଳା ନମିତା ।"

୨୨ । ୪ । ୬୧ ଶାନ୍ତିନିକେତନ

## ॥ ୩୬ ॥ ମଣିଷର କାହାଣୀ

ଚୁପ ଯେଉଁ ରଜନୀରେ କଥା କହେ ବହୁତ ବହୁତ
କଣ୍ଠର ସମସ୍ତ ଶିଖା
ଲମ୍ଫ ଦେଇ ଅନ୍ଧାର ସାଗରେ
ଆତ୍ମହତ୍ୟା କରିଥାଏ, ଅବା,

ଲୁଚିଇ କାହାକୁ
ଚୁପ୍-ଚୁପ ଶୋଇ ରହେ କାନ ଡେରି ତକିଆ କଣକୁ
ପ୍ରେମର ଗୋପନ ଅର୍ଥ
ଭଲକରି ବୁଝିବାକୁ ସୃଷ୍ଟି ମନ୍ଥ ଦେହର ମମତା ।

ଜ୍ଞାନର ପୃଷ୍ଠାରୁ ସବୁ ଲଭିଯାଏ ଅକ୍ଷର ଗୁଡ଼ାକ
ସୃଜନର ମାଂସପେଶୀ
ମାନେନାଇ ଝଡ଼ ରାତି, ମାନେ ନାଇ ଜ୍ୱଳନ୍ତ ଝଙ୍କାର
ଲୁଅ ଦୁଧଖିଆ, ଅଉ, ଫୁଅପଢ଼ା
ଝିଅ ବାହାଘର ;
ଶିଶୁର କ୍ରନ୍ଦନ
କର୍ଣ୍ଣେ କେବେ ନ ଆଣେ ସ୍ପନ୍ଦନ
ଶାସନରେ କର୍ମଦଣ୍ଡ, ଶତ୍ରୁ ଆକ୍ରମଣ
ସବୁକିଛି ଭୁଲିଯାଏ—
ଭୁଲିଯାଏ ରାଜଧାନୀ, ସ୍ୱୟଂ ସିଂହାସନ ।

୨୨ । ୭ । ୬୨

ଶାନ୍ତିନିକେତନ

## ॥ ୩୩ ॥ ଓଡ଼ଶୀ ଲକ୍ଷ୍ମୀ

କଣଙ୍କ କବର ପରେ ମୁଁ ଗଢିଛି ସାଥି
ଫୁଟାଇଛି ବହୁଫୁଲ୍ ସାଜ ମାଲାହାର
ଅଜ ଏ ଶ୍ମଶାନ-ଘାଟେ ବାଡ଼ି ଅସେ
ସ୍ମୃତିର ପବନେ
କୁହେଳି ଘେନେଇ ଅସେ ସାଗରର ତରଙ୍ଗ ଉପରେ
ଅନମନା ହରିଣୀଟା ଭୟପାଏ
ଶିଅର କଣ୍ଟାର ପାଖେ ଛପି ଥିବା ନିର୍ଦ୍ଦୟ ଶବଦେ ।

ବସନ୍ତର କନ୍ୟା ତୁମେ
ତୁମେ ପୁଣି ଯୌବନର ବନ୍ୟା
ଲାଜଲଗେ ଖୋଲିବାକୁ ନୀବବନ୍ଧ, ମୁହଁ ଅନ୍ଧାରରେ
କମ୍ପିଉଠେ ତମର କମ୍ପନେ ।

କୋଣାର୍କର ଫୁଲ୍ ତୁମେ
ପୃଥିବୀର ସବୁରଙ୍ଗ ତୁମରି ଉପରେ ।

ଚନ୍ଦ୍ରଭାଗା ବନ୍ଦରର ଲକ୍ଷ୍ମୀ—
ଉତ୍‌ଦେଶୀ ଦସ୍ୟୁ ଏବେ ନିରେଖିଛି ତୋର ବଢଘରେ
ଲୁଣ୍ଠିତ ଯୌବନ ତୋର ପାଶ୍ଚାତ୍ୟର ପଣ୍ୟ,
ଉତପ୍ତ ବାଲିରେ ନାଚେ ଅଦେହୀ ଡାଆଣୀ ।

ଶୁଣିବି ମୁଁ କୁହ ତୁମେ କଥା
ତୁମର କାହାଣୀ ଶୁଣି ରଚିବି ମୁଁ ଅପ୍ରିୟ କବିତା

ମଖମଲ ଝଁଅସରୁ ଝସିପଡ଼େ ଇଟା ଅଉ ଚୂନ,
ନାଗ୍ରମନ୍ତ୍ରୀ ଡାକେ ବାଜେ ମରଣର ଶତାଧିକ ଧ୍ୱନି
ନୂତନ ମନ୍ତ୍ରଣାଗାର ଉଦ୍‌ଘାଟନ ହେଲା ଏବେ କାହିଁ

(ଅବରତ ପିଚ୍ଚିହୁଏ, ଆଡଗା ଲକ୍ଷ୍ମୀ
ଯନ୍ତ୍ରଣାର ଅଗ୍ରେଦୂ ଲଙ୍ଘନ)
ଇର୍ମି-କ୍ଷମ, ନିଷ୍କର୍ମୀର ଉଙ୍କଷ୍ଠିଳ ନିଷ୍ପତ୍ତି ନମିତ୍ତ ।
ଜୀବନର ବ୍ୟବସାୟ ଶେଷ କର
ଫେରିବ ମୁଁ ଯାଯାବର
ତମରି କକ୍ଷକୁ,
ଦୁଇ ଅକ୍ଷି ମେଲି ମୋତେ ଦେଖିବକି ସାଗର ସୀମାରେ
ବଦାୟୀ ମାସ୍ତୁଲ ଶୀର୍ଷ
ଦିଗନ୍ତରେ ଡୁବିଗଲାକ୍ଷୁଯାଏଁ ?
ଜୀବନର ଦେହ ଛନ୍ଦ ଉମ ଦେହେ ଥାଉବା ନଥାଉ
ତୁମରି ମମତା ମୋର ବନ୍ଧୁର ଜୀବନେ
ଅଣେ ଯେତେ ଜ୍ୟୋତ୍ସ୍ନାସ୍ନାତ ନୁହେଁ ଭୁଲିବାର ।

୧୯ । ୭ । ୬୧ ଶାନ୍ତିନିକେତନ

## ॥ ୩୪ ॥ ଯୌବନ

ଅକାଶ ସେପାଖେ କେଉଁ ଦୂର ବଣେ
ତୁମରି ବଇଁଶୀ ବାଜେ—
ବହିଲେ ଫୁଲର ବାସ,
ବହୁବାର ମୁହିଁ ନିରେଖି ଜଗିଲି
ବହୁଦିନ ସ୍ୱତ ସାରି,
ଜାଣି ନ ପାରିଲି ଅହା ।
ଅସେ ଯେବେ ଉମ ଉନୁର ବାସ୍ନା
ଅଣିଣ ବାହଲେ ଭାସି
ମଳୟ ଜେମାର ମେଲେ,

ମୁଁ ଦେଖିବି ତେବେ ସୃଜନ ସ୍ୱପ୍ନ
ମାଟିର ଶିବିରେ ଶୋଇ
ଚଚ୍ଚୁଲ ଚନ୍ଦ୍ର ତଳେ ।
ସକଳ କାନ୍ତ କୋମଳ ଲଳିତ
ଫୁଲ ଫୁଟିବାର ବେଳେ
ସ୍ୱାଗତ କରୁଛି ତାରେ
ଜୀବନ ସାରି ମୁଁ ଲେଖିବି କବିତା
ଗଭୀର ତନୁର ଲାଗି
ପଦ୍ମ ଚରଣ ତଳେ ।

୭ । ୮ । ୭୧ ଶାନ୍ତିନିକେତନ

## ।। ୩୪ ।। ମୁକ୍ତା ବ୍ୟବସାୟୀ

ଛଟିକା ପ୍ରଭାତ ନାମୀ
ଧାଇଁଛୁ ସାଇକୁ ବୁଲି ଆରମ୍ଭିଛି ହସ ଝୁସି ଗପ
ଜଙ୍ଗଲ ବନର ବାଡ଼ି ଦେଇ ଦେଇ ସବୁରି ନବରେ ।

ଗାଁରେ ଗାଁରେ ଭିକ୍ଷ
ପଲାଶ-କଣ୍ଟାର ବୁଦା
ରକ୍ତପ ପଣାର ବଣି
ହାତ ପାଦ କାଲବିତ ଯହିଁ
ଗୋଟି ଗୋଟି କରେ ନାଡ ଧାନ ।

ଅଯଗୋ ଅଯଗୋ ପ୍ରିୟା,
ହାତେ ଧରି ସୁନାର ପାତୁଆ
ଯିବା ବଙ୍କା ମୁକ୍ତା
ବାଘ ଭାଲୁ ଭୟ ନାହିଁ
କଟୀରେ ମୋ ଶାଣିତ ଛୁରିକା
ଡରିଯିବ ମରଣ ସୈନିକ ।

ତୁଇ ମୋ ସରଗ ଚମ୍ପା
ସଂସ୍କୃତର ଶ୍ରେଷ୍ଠ ପ୍ରତିନିଧି
ଚରଣ ଗୃଳିର ଛନ୍ଦେ
ବାଜି ଉଠେ ଜୀବନ ବଲ୍ଲକୀ
ଲୀଭ କାସ—ଥେଇ ଥେଇ
ନାଚି ଏଇ
ଗ୍ରେଷ୍ମ ବାଲିଟାରେ ?
ଗୋପନରେ ମୂଲ୍ୟ ନାହିଁ
ଶତର ସାଗର ତଳୁ ମୁକ୍ତା ଖୋଜି ବିକିବା ବସ୍ତିରେ ;
ତମର ଅନ୍ତର ଛଟା
ଦେହର ନଥ, ମଥାମଣି ପ୍ରତି ନାଗସ୍ୱର ।

୮ । ୯ । ୬୧ ଶାନ୍ତିନିକେତନ

## ॥ ୩୭ ॥ ଆସବାବ ପତ୍ର

ଆସବାବ ପତ୍ର ସବୁ 'ରଖିବା ସଜାଡ଼ି
ଥାଉ-
ଥାଉ ;
ପରିଚ୍ଛନ୍ନ ପ୍ରକୋଷ୍ଠର ଗୃହବାନ୍ଧୁ ଛୁଇଁ
ଖେଳୁଥିବ ମୋର ଅଭ ତୁମର ମହକ ।

ସମ୍ବଲପୁରୀ ପର୍ଦ୍ଦା ବାତାୟନେ ସାଜିବ ପ୍ରାଚୀର
ବାଧାଦେବ ଅନାହୂତ ବିକଟ ନୟନେ ।

କହୁଛ ଢେଉ
ମଧୁଲୋଭୀ ଭ୍ରମରର ଆତ୍ମକଥା ।

ସନ୍ଧ୍ୟର ଅସୀମ ଊର୍ମି !
(ମୁଁ ଯୌବନର ସେନାଧ୍ୟକ୍ଷ)
ତମ ଦେହେ ବହୁବାର ଆଣିଛି ଚମକ ।

ଜୀବନର ବିଭାଜକ କାଳ
ଛାଇ ହାତଅର ଖେଳେ
ଏକମେଳେ
ପାଲଟିବା ମୃତ୍ୟୁର ସୈନିକ ।
ଆମେ ଯାଇ ସଜାହେବା ପ୍ରତିଭାର କମେ
ଆସିବାବ ପଦ୍ର ପର ସ୍ରଷ୍ଟାର ସଦନେ
(ମୁଁ ନିଶ୍ଚିତ ରହିବ ପ୍ରଥମେ)
ତମେ ଥିବ ମୋର ପାଖଲଗ
ସେଦିନ ତେଉଁ ସବୁ ଗାଉଥିବେ ଅମର ସଂଗୀତ ।

୯ । ୮ । ୬୧
ଶାନ୍ତିନିକେତନ

## ॥ ୩୭ ॥ ଫୁଲ—କୀଟଦଷ୍ଟ

ସଞ୍ଜ ସମୀରେ ଶିଞ୍ଜନ କାର
ଚୁପ୍ ଚୁପ୍ କଥା ବାର୍ତ୍ତା
ଅଙ୍ଗନ କୋଳେ ରଙ୍ଗ ଫୁଆରା
ସୁଖ ସାଙ୍ଗେନା ଚର୍ଚ୍ଚା
ପଶ୍ଚିମୀ ସୁଅ ବହେ
ଅସ୍ତ ଯାଉଛି ସୁରଥ ସୂର୍ଯ୍ୟ ବ୍ୟସ୍ତ ମରୁତ କହେ ।

ନବରମ୍ଭାର ନବ ସମ୍ଭାର ଚଳ ଚଞ୍ଚଳ ଗୁଲି
ରୂପ ବୈଭବ ଦେହ ସୌରଭ ପାଠ ଅଞ୍ଚଳ ନାଳି

ଲକ୍ଷା ଚରଣ ଶୋଭା
ଫିଟି ପଡ଼େ ଯେବେ ନୀଳ କୁନ୍ତଳ ଛୁଟିକି ପଡ଼ଇ ଆଭା
କବିତା ନୁହେଁ ସେ ବନିତା ନୁହେଁ ସେ କବିତା ବନିତା ସବୁ
ଛନ୍ଦ ତାହାର ଗନ୍ଧ ଅଶିତ ଶଶି ନନ୍ଦିତ ଭବୁ
ରଶ୍ମି ତାହାର ନାଆଁ,
ଝାଲେ ଜଙ୍ଗଲ୍ ଜାଳେ ସଂସାର ଜାଳଇ ଗାଁ-କୁ ଗାଆଁ ।

ଚମକି ପଡୁକି ଫୁଲ,
ଚୋଇଯାଏ ବୋଲି ଭୁଲିଅ ତୋ'ହର ଲକ୍ଷ୍ମଗୃହାଣୀର ମୂଲ ।

ତା ୧୬।୮।୬୧
ଶାନ୍ତିନିକେତନ

## ।। ୩୮ ।। ନାରୀ

ତୁମେ ତ ବିଶ୍ୱର ଅଧା
ସାନ ବୋଲି କହିବ କେମିତି ?
ତମର ଶାସନେ ଉଦେ
କୋଟି କୋଟି ଗ୍ରହ, ଚନ୍ଦ୍ର, ତାରା
ଫାଲ୍ଗୁନର ଛବିଳ ସକାଳ
ଆଖି ମୁଦା ସଂଧ୍ୟା ।
ସୁନାସ୍ତି ଫୁଲର ତେଜେ
ପ୍ରାଣକର ଯେତେ ଅଗ୍ନି ଶିଖା
ତୁମେଇ ଲଗାଇ ଦିଅ·ଆଜି ଏକ ନୂତନ ଅନଳ
ଚକ୍ଷୁ ହେବ ଯାର,
ହଜାର କୋଶର ଭିଠେ
ମାନେ ନାଇ ପ୍ରଳୟ ମେଦୁର
ଜୀବନର ପୂଜା ଡାଲି ଫିଙ୍ଗି ଦେଇ ଉମର ଗରବେ
ପାର ହୁଏ ଯୌବନର ଗଡଖାଇ ସମସ୍ତ ପରିଖା ;

ନାମ୍ନା-ଘାତେ ଛବ
ସ୍ୱଦେହ କ୍ଷରିତ ରକ୍ତେ ବୁଡ଼ିଯାଏ ଆହତ ବିହଗ ।
ମୁରଲି ଡାକରେ ତୁମେ ଆସିଥିଲ କଦମ୍ବ କାନନେ,
ଇନ୍ଦ୍ର ଡାକେ ଗୌତମର କକ୍ଷେ
ପାଉଥିଲ ଫୁଲର ବିଛଣା
କର୍ଣ୍ଣର ଜନମ ପାଇଁ ସୂର୍ଯ୍ୟ ଯେବେ ସାଜିଲା ମାନବ ।
ମୋର କକ୍ଷେ ତୁମେ ହୁଅ ସମତଳ ପ୍ରବାହିନୀ ନଦୀ
ଧୂପ ଅମୋଦିତ ପଥେ ପଦ୍ମରେଣୁ ବିଛି
ପ୍ରସ୍ତରର କର୍ଣ୍ଣିକାର, ଝଲ ଝଲ ଲବଣୀ ପିତୁଳା
ହାତ ପରେ ହାତ ରଖି ଲିଭିବିବା ଅନଙ୍ଗର ଧୂନି,
ଦେବାଳୟ ତୋଳି ଏ ବକ୍ଷରେ
ନିଜେଇ ସାଜିବା ମୂର୍ତ୍ତି-ଦେବ-ଦେବୀ
ପୂଜି ପରସ୍ପରେ ।

୩୨. ୮. ୭୧ ଶାନ୍ତିନିକେତନ

## ॥ ୩୯ ॥ ପ୍ରେମଲତା

ଗ୍ରନ୍ଥାଗାର ବନ୍ଧୁଥାଇ ପିଠି ତମକୁ ମୁଁ ଦେଇଚି ଅଘାତ
ପ୍ରବନ୍ଧ, ନିବନ୍ଧ ସବୁ ହତାଦରେ ଫିଙ୍ଗିଦେଲି ବୋଲି
ଭୁଲିବିକୁ ସମସ୍ତର ଦୀର୍ଘ ଅଲୋଚନା
ଜୀବନର ଗ୍ଲାନି
ସଭ୍ୟତା ଭଲୁଇ ଡାକ
ବିଜ୍ଞାନର ବିଜୟ ବାରତା ।
ତମେତ ଅସୂଚ ନିତ
ସ୍ୱର୍ଣ୍ଣାପ୍ଲିତ ମେଘ ପୃଥିବୀରେ
କୁସୁମ ସଭାରୁ ଶୁଣେ ପ୍ରତିଦିନ ତୁମର ଭାଷଣ ।
ଶୁଣିବାକୁ ଜୀବନ ଉଚ୍ଛ୍ୱାସ ।

ସଜ୍ଜିତ କୁଟୀରେ ମୋର ହୋଇନାଇ ତୁମ ପଦାର୍ପଣ
ଦେଖିବାକୁ,
ନିଜକୁ ଆଘାତ ଦେଇ ଯାହା ଯାହା ସାଇଛନ୍ତି ମୁହିଁ ।

ମୋ କୁଟୀରେ ଜ୍ୟୋତ୍ସ୍ନା ପଡ଼େ
ଗନ୍ଧ ଛୁଟେ ମଠାଳ ମାଟିର
ପ୍ରଥମ ମେଘର ବାଷ୍ପ ରଖିଥାଏ ପିଚୁଶ୍ଳିଷ୍ଟା ଯଥା ।

ମୁଁ କବି ଏ ବିଶ୍ୱ ଜୀବନର
ଅନେକ ଜଙ୍ଗଲ ତଳେ ଜାଳିଚି ମୁଁ ସୁନାର ପ୍ରଦୀପ
ହାତେ ମୋର ଶାନ୍ତିର ମଶାଲ୍
ବୁଭୁକ୍ଷୁର ଅଶା ଥାଳି
ଦୁର୍ବଳର ବଳ,—ଭୟଙ୍କର ଦାନବର ଭୟ ।

ମୋ କୁଟୀର—ଏକ ଅସ୍ତ୍ରାଗାର
ଦାଉଆ କଟୁରୀ ଗୁଳି କାଟେ ମୁହିଁ ସମାଜର ପଶୁ
ପ୍ରତିରକ୍ତକଣିକାର ଶକ୍ତି ଝିଲିବାକୁ ।
ଅନାଗୃତର, ଅବଗୃତର
ସବୁର ମରଣ ଲାଗି ରଖିଚି ମୁଁ ଲୁହାର ହାତୁଡ଼ି ।

ତମକୁ ପାଇବି ବୋଲି ଏ ବିରାଟ ସାଧନାର କରେ ଆୟୋଜନ
ସଖି, ପ୍ରିୟତମା,—
ତମର ଆନନ୍ଦ ପାଇଁ ରଚିଛି ମୁଁ ଅଜସ୍ର କବିତା
ମାନିନାଇ ଭୟ, ବନ୍ଧି ବିପଦର ଅକ୍ଷାଂଶ ଦ୍ରାଘିମା ।

୨ । ୯ । ୭୧
ଶାନ୍ତିନିକେତନ

## ॥ ୪୦ ॥ ତରଙ୍ଗ

ବଧୂଲି ବହଳ ନାଲି ପୋହଳା ସନ୍ଧ୍ୟାର ଓଢଣ
ବିରସ ବାଅରେ ଅସି
ଶିର ପିଟି ବେଳାଟାରେ ନିଜକୁ ମାଇଲା ନିଜେ
ରସର ତୁରଙ୍ଗ ଖୋଲି ଅପଣା ବେଣକୁ ଅପେ
ଗମ୍ଭୀର ଗହ୍ୱର ହୃଦେ ଫିଙ୍ଗିଦେଲା ଦେଖୁ ଦେଖୁ ;
ଢଳକୁ ଢଳଚ ତାଳ
ନଜାଣି ନବୁଝି କିଛି ହାଣିଦେଲା ଅପଣାର
ଘର ପୋଷା ସାଧବ ବୋହୂକୁ ।

ଅଲସ ଖଲସ ଢଗ ଧଳାକୁ କହୁଚ କଳା
ନାଲିରେ ମିଶାଇ କାଳି ସିତର ଉପମା ଏବେ
ଛନ ଛନ ମନ ତାର ଛପି ଛପି ଘୂରିବୁଲେ
ଘାଇରେ ଘାଇରେ ମିଶି ଔଳ ତରୁ ଗଛର ଢଳକୁ
ଖୋଜି ବୁଲେ ନୀରବରେ ଅପ୍ରିୟା-ପ୍ରିୟକୁ ।

ତେବେ ବି ବସିଚ ସିଏ ପିଠିକୁ ଅଉଜି ମୋର
ପୋଖରୀ ଗୋଳିଅ ଜନ୍ତୁ ଘେଣ୍ଟ ଘେଣ୍ଟ ମୀନ ଝୁଣ୍ଟି
ବାର ବାର ମଙ୍ଗ ମୋଡ଼ି ଉଜାଣି ନଇଁଠା ଦେହେ
ଏଣିକି ତେଣିକି ଛୁଟେ ସବୁ ଘାଟେ, ତୁଠ ଭୁଲି ।
ମୋ ମୁଖର ଧଳା ତଳ ଛାଆର ନାରଙ୍ଗୀ ଦେହେ
ନିଇତି ଜଳୁଚି ଉଠୁ ସରମ ଧରମ ସାର
ଅଲୀକ ଜୀବନ କାହିଁ ଭେଲିକି ଲଗାଇ ଦେବ
ବରଫ ସଇନି ଧରି ଉତ୍ତର ଦେଶର ରାଜା ।

ରହଣୀ ଘଣ୍ଟାଏ ଜମା ସାରଥିବା କାମ ଦାମ ;
ଅଳସ ବିଳାସ ରଙ୍ଗ
ଜୀବନେ ଜୀବନ ଥାପି
ସଜାଡ଼ ସଜାଡ଼ ଅର୍ଘ୍ୟ ଦେବା ଯେ ଦେଉଳ ଶୁଭ ।

୩ । ୧ । ୬୧ ଶାନ୍ତିନିକେତନ

## ॥ ୪୯ ॥ ଦକ୍ଷିଣ ନାୟିକା

ଉତଳ ଅବେଳେ ମୁହିଁ
ନଈଘାଟେ ଜଳପାନ ବେଳେ
ଉଦ୍ୟାନରେ ଉସୁ ବସୁ ଛଟ୍‌ଭର ନିଦ ଗଲେ ଭାଙ୍ଗି
ଦେଖିଲି ନିଜକୁ ତାଙ୍କି ଲୁଚିଛି ସେ ମଶାରି ସେପାଖେ
(କାଚର କଳସି ଦେହେ ରଙ୍ଗ ଜଳ ପରି)
ମେଜର କଣିକୁ ମୋଟେ ଜୋର୍ କରି ଠେଲି
ପ୍ରଦୀପ ଲିଭାଇ ଦେଇ ଜାଳିବାକୁ 'ଜୀବନର ସମସ୍ତ ପ୍ରଦୀପ
ଏ ପଲଙ୍କ ତାର ଫୁଲସଜ
ପରଧିନ ଉତ୍ସବର କରଚି ସେ ସଳିତାର ସଜ ।

୨୭ । ୮ । ୬୯

ଶାନ୍ତିନିକେତନ

## ॥ ୪୬ ॥ ଯୌବନରପ୍ରହରୀ

ଯୌବନର ପ୍ରହରୀ ମୁଁ
ଏଣିକି ତେଣିକି ଘୂରେଁ
ସପନ ଭୁଲାଏ ଦେଶେ ଝିଟିପାଗ ଜଗି ରହେ
ବିଜୁଳି ଯେମିତି କଳେ
ଅଲୁଅ ଯେମିତି କାନ୍ଦେ
ମେଘ ଡାକେ ମେଘର ମୃଗୀକୁ ।
ଆସିବୁ କି ଆସିବୁ ନାହିଁ ବୋଲି,
ନଈ ବାଲିଘର ଡାକେ କଥା, କାଶତଣ୍ଡୀ
ଘୁଣ୍ଟିଆ ପୃଥିବୀ ରୂପ ଦେଖିବା ପାଇଁଲେ ।

ଉଅସ ବାହାର ଲୋକେ
ପଗୁରନ୍ତୁ ଜଣ ଜଣ କରି
ଡାକୁଛି କି ଦିବସର ଶେଷ
ମଧ୍ୟାହ୍ନର ତପନ ଅସ୍ତେନ
ଅଦେଖା ବାଅର ଗ୍ଲାନି
ବାହେ କି ଲୋ ଶୀତର ତରଣୀ ?

ଯୌବନର ନାଟ୍ୟାଗୃର୍ଯ
କରିଛି ଯେ ଶଏ ପ୍ରଦର୍ଶନୀ
ମୁଁ ତାହାର କେନ୍ଦ୍ର ଚନ୍ଦପଟ
ତମର ବଚନାଞ୍ଚଳ ଦେଖିଛି ମୋ ସୁବର୍ଣ୍ଣ ମୁକୁଟ ।

୭ । ୯ । ୬୧ ଶାନ୍ତିନିକେତନ

## ॥ ୪୩ ॥ ମଧୁମକ୍ଷିର ନାୟିକା

ଉଠ…ଉଠ…, ମୁଁ
କେତେବେଳ ଯାଏଁ ଶୋଇଥିବ ଆଉ ?

ଚୁପ୍…, ପାଟି କର ନା ।
ସକାଳ ରବିର ରଙ୍ଗ କେଡ଼େ ମନୋହର !
କଣ, ତମ ଓଠ ପରି ?

ଧେତ୍…, ବେହୁଆ
ବାହାରେ ଡାକୁଛି ସହର
ପାଇକ ପୁଅ ବଜାଉଛି ସୁନ୍ଦର ନାଗରା

ତୁମେ ସାଙ୍ଗୁ ପିନ୍ଧବ କେତେ ବେଳେ ?
ମଠର ଗାଡ଼ିର କର୍ମ-ଅହ୍ୱାନ ?
ବିଜ୍ଞାନାଗାରର ପରୀକ୍ଷା ? ?
ତୁମର କାବ୍ୟ ଶେଷ ହୋଇନାଇ
ନାୟକର ସୁନା ଶିଢ଼ିର ଯୋଜନା।
କେତେ ବେଳେ ହେବ ସଫଳ
ଦୋକାନ ବନ୍ଦ ଦେଖି
ଫେରି ଯିବେ ଗ୍ରାହକ
ଉଠ,...କରାଦ କାମ ଶେଷ କର ।

୧୦ । ୯ । ୬୧
ଶାନ୍ତିନିକେତନ

## ॥ ୪୪ ॥ ଅହଲ୍ୟା ଉଦ୍ଧାର

ପ୍ରାସାଦ ହୋଇଚି ଠିଅ ନାହିଁ ରାଜବଧୂ
ନାହିଁ ଋଷି—ଖାଲି ତପୋବନ,
ଶୂନ୍ୟ ଦେବାଳୟ ;
କାହିଁ ଲକ୍ଷ୍ମୀ ?
ନିବାର ଉବଶ ଏକ ଭାରତର କେଦାରେ କେଦାରେ;
ଗୋଲାପି ନଗର ଏକ ବୁଢ଼ିଗଙ୍ଗା ଫଧାର ସାଗରେ ।

ନୂଆ ନୂଆ ତେଜ ସବୁ
ପିଛି ହୋଇ ପଶ୍ଚିମା ପବନେ

ବେଳାର ସରଳ ବାଲି ଦେଲେ ଢାଙ୍କି ଖଣ୍ଡ ଖଣ୍ଡ କରି
'ସାଇନୋ' କବିତା ମର୍ମ ରହିଲା ଅବୋଧ୍ୟ
ଅନ୍ଧାର ଝାଡ଼ସ୍ରିରେ ବସି ଘୁମନ୍ତ ପ୍ରହରେ
ହେମଶସ୍ୟ କଲେ ନଷ୍ଟ
ମତ୍ତ ପଙ୍ଗପାଳ ।

ତାରୁଣ୍ୟର ତାମ୍ରଚେତକେ ମଖମଲି ହୋଟେଲ ପାହାଚେ ।
ନୀଳ ନେଶୀ ସଙ୍ଗୀର ଲୋହିତ ନଭିନ
ମେଘ ଅଙ୍ଗେ ଲଭୁଯାଏ ବିଜୁଳିର ହାତ
ହାତ ନୁହେଁ ହାତର ଛଳନା
( ପ୍ରେମ କେବେ ନଥାଇ ବେଦନା ? )

ଅସ ଅସ ପ୍ରିୟା !
ଭାଂଗିବା ସାମ୍ନେନା ପାକ
ସାଢୀର ରେଶମୀ କେଣ ଫିଙ୍ଗିବା ଅନ୍ଧାରେ
ପୋଛିଦେବା ବୃନ୍ଦାବନ ନାମ
ସ୍ୱପ୍ନ କରିବା ଫୁଲ ଦେବା ତାରେ ରୂପରଙ୍ଗ ଆଣି
ଦୀର୍ଘ ଏତେ ଦିନ ପରେ ହେଲା ଯାହା ଆବିର୍ଭାବ ଆମ ।
ଅହଲ୍ୟାର ମୁକ୍ତିପାଇଁ ହେବ ରାମଚନ୍ଦ୍ର
ସୀତାହେବ ରହିଲା ମୋକ୍ଷଣ ।

୨୧ । ୯ । ୬୧
ଶାନ୍ତିନିକେତନ

## ॥ ୪୫ ॥ ରଜନୀ

ଏକାକୀ ଯାବା ଦୁଃଖ ଦଏ ।
ହୃଦୟ—ପଦ୍ମ ଗୁଡ଼ ଦୂରେ
ନିର୍ମମ ସେ ତୀକ୍ଷ୍ଣ-ଚଞ୍ଚୁ କାଠହଣା ପକ୍ଷୀ କବଳରେ
କାନ୍ଦେ ତାଳି **ଲୟ** ;
ଲୌହ-ପାଦ-ରେଲ ଦ୍ରୁତପଦେ
ଦଳିଦଏ ଖେତେ ଦଳେ, ପ୍ରୀତ-ପଲ୍ଲବନେ
ଅଜୟାର ସ୍ରୋତେ ସ୍ରୋତେ ଭାସିଯାଏ ଚୂର୍ଣ୍ଣ-ରକ୍ତ ରେଣୁ ।
ଶୋଇଥିବ ତମେ ଏତବ ତମର ଠାଣିରେ
କବାଟରୁ ଜହ୍ନ ଖୋଲି
ଓଠ କାଟି ଗୋଲାପର କଟି
ଚନ୍ଦ୍ର-ଶିଳ୍ପୀ ଚନ୍ଦ୍ରପର ସୌନ୍ଦର୍ଯ୍ୟର ଯୌବନକୁ
କରି ଆଲିଙ୍ଗନ ।
ଦ୍ୱିପଦ—ରାତର ଦାନ୍ତ,
ଅନ୍ଧାରର ହାତ-ଭୟଙ୍କର,
ଗୁୟାର ବକ୍ଷ ଚକ୍ଷୁ
ବଜ୍ରବତ ନିର୍ଜନ-ବନର
ଧରିଥିବ ଗୁପ୍ତି ତମ
ନୟନର ସଙ୍କୁଚିତ ଭୟାର୍ତ୍ତ-ପଦକୁ ।
ସୁହାଧର କାନ୍ଦିବାକୁ ଭଲ ଲାଗେ ତମ ଦୁଃଖ ଦେଖି ।
ଏ ଜହ୍ନ ମାରୁଚି ହାଇ

ବହୁଦୂର ଅନ୍ତ-କୁଞ୍ଜେ ବସି
କରେ ଶବ୍ଦ—ଚୋକ୍କଳର ସବୁସ୍ତିଗ କର ଅସ୍ପସାତ ।
ଷ୍ବୀର କରୁଣ ଶେଷେ
କାନ୍ଦ୍‌ନାଇ ଭରତୀସ୍ଥା ପକ୍ଷୀ
ରଜନି !—ତୁମେ ବିଦାୟ ନିଅ,
ବିଦାୟ ନିଅ ।

୨୬ । ୯ । ୬୧

(ଗୟା ପାସେଞ୍ଜର-ଶାନ୍ତିନିକେତନରୁ ଶିଅଳଦା)

## ॥ ୪୭ ॥ ପ୍ରେମ

ବହୁବାର ଡାକିଛି ମୁଁ ସ୍ୱଗତରେ
ନିଭୃତରେ—ପ୍ରିୟା ପ୍ରିୟତମା ।
ଗୋଟାଏ ଫୁଲ୍‌ତ କାହିଁ ଝଡିନାହିଁ ଶେଫାଳି ପାଦପୁ ।
ନାହିଁ ଉତ୍ତର
କାହିଁ ତାର ଅଧରର କମ୍ପନ ସଙ୍ଗୀତ
ପଦ୍ମବାସୀ ଗୀତ
ପ୍ରତିଧ୍ୱନେ ଧ୍ୱନିତ କେବଳ ।
ପ୍ରେମର ଅଭାବ ଯେବେ ଉକୁଟିବ ସମସ୍ତ ପୃଥିବୀ
କେହ୍ନକି ପାରିବ ରହି ଦୂରେ ?
ଅସ୍ମିତା ନିର୍ଲିପ୍ତ ନୁହେଁ,
ତୁମ୍ଭେ ମୁହିଁ ଅଙ୍ଗର ଅବେଗ
ଅସୀମ ଖଣ୍ଡର ସ୍ୱପ୍ନ ।
ମୋ ପ୍ରେମ କଳ୍ପନା ନୁହେଁ
ଯଦ୍ୟପି ପ୍ରକାଶ ତାର ଅସମ୍ଭବ କ୍ଷୁଦ୍ର କବିତାରେ,
ଠିକ୍ କହି ଜାଣେ ତାକୁ
ନୁହେଁ ପ୍ରେମ କାମନାର ଅଶ୍ଳୀଳ ତରଙ୍ଗ ;

ହୃଦୟେ ହୃଦୟ ପକ୍ଷୀ
ଲାଲ୍‌ଅଣ୍ଡେ ଲେଖେ ପ୍ରେମଗାର
ପ୍ରାରମ୍ଭ ଅସ୍ପଷ୍ଟ ଅତ
ନାହିଁ କେବେ ଶେଷ ପରିଣତ
ଲଜ୍ଜା ତା ଚରମ-ଶୀର୍ଷ ଇନ୍ଦ୍ରଧନୁ ବର୍ଣ୍ଣ ଅଭିମାନେ
ଜଳେ ତହିଁ ଅରୂପ ପ୍ରଦୀପ ;
ବିଚ୍ଛେଦର ଘନଶ୍ୱାସ
ବର୍ଷାସ୍ରୋତରେ ବଖାଣେ ଯେ ପ୍ରେମର ସ୍ୱରୂପ ।
୭ । ୧୦ । ୬୧ ଶାନ୍ତିନିକେତନ

## ॥ ୪୭ ॥ ଆଖି

ଶତ ଶତ ପତଙ୍ଗମ ସମ
ଅପଣାର ଅଙ୍ଗକ୍ଷୟ ଲାଗି
ଉଜଳ ଅକ୍ଷର ଉପବନେ ବାଚ୍ଛିତ ମୁଁ ବସା
ନିଜକୁ ଜାଳିବା ଲାଗି ।
କାଚ ଆଖି
ପାରଦର ଆଖି
ହୀରା-ନୀଳା ମୋତି ଝଞ୍ଜା ମୃଗୁଣୀର ଆଖି
ମୋ ଭୁମ୍‌ର ଧାରେ ଧାରେ ନାଚେ ।

ହଜାର ଅକ୍ଷିର ଭିଡ଼େ
ସେଇ ଆଖି ଅପେ ଅପେ ବାରି ହୋଇ ପଡ଼େ ।

ମୂର୍ତ୍ତି ଜୀବନ୍ତ,
ପଙ୍କ—ଅସୁନ୍ଦର,
ଅନ୍ଧ ଯିଏ ହସିଉଚି କାଳର ସନ୍ତାନ
ଜୀବନର ଫୁଲ ଦୋଳି ଖେଳେ
ପ୍ରତି ହୃଦୟରେ
ଅକ୍ଷର ଅସ୍ମିକ-ପ୍ରୀତି ପାର୍ଥକ୍ୟ ବିହୀନ ।
୯ । ୧୦ । ୬୧ ଶାନ୍ତିନିକେତନ

## ॥ ୪୮ ॥ ଶରତ୍ ରାତର ଜୋଛନା

ଶରତ ଅଲୋକର ଅଭିମାନ
ଏକା ଭାଙ୍ଗି ଦିଏନା ।
ଶେଫାଳି !—ଫୁଟି ଝଡ଼ିଯିବା ତୁମର ଯଦି ଇଚ୍ଛା
ଘନ ସବୁଜ ବୃକ୍ଷତା ପୂର୍ଣ୍ଣ ଗହନରେ
ଭରିଲ କାହିଁକି ଅସୀମ ଅପାର ସୁରଭି ?
ପଶ୍ଚବତ—
ପୁଲକିତ ଅପଘନ ଶ୍ୟାମଳ ନବ ପତ୍ରକୁ
ବକୁଳ କୁଞ୍ଜ ଲଳିତ ସୁମନକୁ
ସେମାନଙ୍କ ପାଖେ ଦେଇ
ଭୁଲି ଗଲବେଳ
ମୁଁ ଉଚ୍ଚାରଣ କରିଛି ତାହାର ନାମ ।

ଜ୍ୟୋତ୍ସ୍ନାଠାରୁ ରଜତ ଉତ୍ତରୀୟ
ତମେ ଛଡ଼ାଇ ଅଣ ରାଜକନ୍ୟା ;
ଦୁର୍ଗର ତୋରଣେ ତୋରଣେ
ଗମ୍ଭୀର
ମର୍ମର-ପାହାଚ
ଅଜି ହସି ପଡେଇଛ ଦିକ୍‌ବନା ।

ଏଇତ ସେଇ ସନ୍ଧ୍ୟା-ନଗରୀର ଜ୍ୟୋତ୍ସ୍ନା ଯୁବତୀ
ମୁଖେ ତାର
ହଜାର ବର୍ଷର 'ପ୍ୟାସା',
ଅକ୍ଷି ତାର
ମୁଗ୍ଧ ବନ୍ଦରର ଇତିହାସ କହେ

(ଯହିଁ ଏକଦା ଥିଲା ଏକ ବିରାଟ ବଡ଼ ଘର
ଆଜି ଲୁପ୍ତ) ।

ଶତ ଶତ ଦିନାନ୍ତର ରଙ୍ଗ ତପନ ନିଷ୍ପ୍ରଭ ।
ଆଜି ମାଟି ଗୃହେଁନା ଲୋଟି,
ଶହୀଦ୍‌ର ତପ୍ତରକ୍ତ,
ଗର୍ଭବତୀ ନାରୀର ହତଭାଗ୍ୟ ଭାବି ସନ୍ତାନର
ଦୁଇଟି କଅଁଳ—ଲାଲ୍—ଟହଟହ କଳିଜା,
ଗୃହେଁନା—ବନ୍ୟାର ପ୍ରଲେପ ।
କୋଟି କୋଟି ଶେଫାଳିଙ୍କୁ
ନିବିଡ଼ ଆଶ୍ଳେଷରେ ବାନ୍ଧି
ସେ ଗୃହେଁ
ଭାଙ୍ଗିବାକୁ ଏଇ ରୂପ ଗରବିଣୀ ଶରତ ରାତିର
ଗର୍ବ ;
ଯେ କେବଳ ହୃଦୟ ନେଇ ଜାଣେ
ଦେଇ ଜାଣେନା ।
୨୪ । ୧୦ । ୬୧. (କୁଆଁର ପୁନେଇଁ) ଶାନ୍ତିନିକେତନ

## ॥ ୪୯ ॥ ଦେବୀ

ଏ ଚିଠିରେ ବାପାଙ୍କ ଉପଦେଶ
ଅନ୍ୟରେ ମା'ର ସ୍ନେହଗାଳି
ସାନ ଭାଇର ନୂଆ କଲମ ପାଇଁ ଆଦେଶ
ଭଉଣୀର ଅଳି,
ଲଫାପା, ଇନ୍‌ଲାଣ୍ଡ୍ କେତେ ନା ପୋଷ୍ଟକାର୍ଡ ।
ସାଙ୍ଗ ଲେଖିଛି ଭୁବନେଶ୍ୱରରୁ—
ଶରତ ରାତିର ବିନ୍ଦୁସାଗର ଶତହଂସର କ୍ରୀଡ଼ାସ୍ଥଳି,
ନୂଆ ରାଜଧାନୀରେ ଜ୍ୟୋତ୍ସ୍ନା ଫୁଲର ମଦ
ଶଯ୍ୟାରେ ବନ୍ଦୀହୁଏ—
ସେ ନିମନ୍ତ୍ରଣ କରିଛି
ରାଜରାଣୀ ମନ୍ଦିରର ଛାୟାରେ ବସି

ଗୋଟେ ଦୁଇଟା ଦାମୀ ସିଗ୍ରେଟ ଟାଣିବାକୁ ।
ପୁରୀର ସନ୍ଧ୍ୟା,
ଗୋପାଳପୁରର ଅର୍ଦ୍ଧଯାମ,
ଦାର୍ଜିଲିଂରେ ମେଘାଚ୍ଛିତ ଅପରାହ୍ନର ଆବେଶ
ଶାରଦ ଅବକାଶର ଆକର୍ଷଣ ।

ଅବସର ବିନୋଦନ ପାଇଁ
କେଉଁଠିକି ଯାଇ ପାରୁନାଇ ।
'ନାନୀ ଲେଖିଛି କେନ୍ଦୁଝର ଗଡ଼ରୁ—
କୁନିରେ ମୋ କଢକି ଆସିବୁ ପୂଜାରେ
ମୁଁ ତୋତେ କେବେଠୁ ଦେଖିନି ପରା ।
ଅପା ଲେଖିଛି ବାରିପଦାରୁ—
ଛୁଟିରେ ନିଶ୍ଚୟ ଆସିବୁ କୁନି
ମୋ ପାଇଁ ନ ହେଲେ ବି
ତୋ ଟିକି ଭଣଜାଟି ଲାଗି
ମା' ଲେଖିଛି ଘରୁ—
ତୋ ପାଇଁ ଘରଟା ଖାଲି ଖାଲି ଲାଗୁଛିରେ କୁନି
ଆସିବୁରେ, ମୋତେ ପରା ନିଦ ହେଉନାଇ ।
କିନ୍ତୁ କାହିଁ ତାଙ୍କର ଚିଠି ?
ଦିନ୍ ଡ଼ାକ ପିଅନକୁ ପଚାରି ନିରାଶ ହୁଏ ।
ପୁରୁଣା ଚିଠି ଗୁଡ଼ାକୁ ଏପଟ ସେପଟ କରି
ଯେତେ ଦେଖିଲେ କଣ ଶାନ୍ତି ମିଳେ ?
ବଢିଯାଏ ବେଦନା,
ଅପସରେ—ପ୍ରେମର ଦିଗନ୍ତ ।
ପୁଣି ଆସନ୍ତା ଚିଠି
ନୂଆ ଭାବନା ନେଇ
ନୂଆ ଚେତନା ନେଇ
ସରଗ ଫୁଲର ହସରେ ଭରିହୋଇ ।
ମା'ର ଶୁଭାକାଂକ୍ଷା, ଭଉଣୀର ଅଳି
ପ୍ରିୟାର ପ୍ରିୟାତ୍ୱ ସବୁପରା ତାଙ୍କର ଠେଇଁ ଠୁଳ ।

୨୫।୧୦।୭୧ ଶାନ୍ତିନିକେତନ

|| ୫୦ || ଚିଠି

ତମକୁ ପ୍ରିୟା, ସଖି
ପ୍ରିୟତମା—ବୋଲି
ସମ୍ବୋଧନ କରି
ମୁଁ ଅର୍ଦ୍ଧରାତରେ
(ହଷ୍ଟେଲ୍‌ର ଅନ୍ୟପିଲା ଯେତେବେଳେ ସୁଷୁପ୍ତ)
ଢେରେ ଚିଠି ଲେଖିଚି
ପୁଣି
ସକାଳ ପୂର୍ବରୁ ଚିରିଚି ।

ଉତ୍ତର—
ସତେ ତୁମେ କଣ
ସ୍ନେହ ସମ୍ବୋଧନ ଦେଇ
ଆବେଗ ଭରି କାଲିରେ
ମୋ ପାଖକୁ ଚିଠି ଲେଖ
ଆଉ
ଦୁଷ୍ଟ ସାନ ଭଉଣୀ ଉପରେ
ଚିରିଦିଅ ॥
୨୫।୧୦।୬୧ ଶାନ୍ତିନିକେତନ

## ॥ ୫୧ ॥ ରତ୍ନଦ୍ୱୀପର ମାଟି

ରଙ୍ଗ କାଗଜକଟା ସୁଲଟ୍-ସୁଲ୍ତାନ ଘର
ଅଫଟା ଉଦ୍ୟାନ ତଟେ ଅକ୍ଷିଖୋଲି ତମେଇ ଗୃହିଁ ଚ ;
ସାଇକେଲ୍ ଟକପର ମାଳ ସୂର୍ଯ୍ୟ ଢୁର ଢୁର
ଅଶ୍ରୁ ଭାଙ୍ଗି ପଡ଼ିଗଲା ବେଳେ
ସମୁଦ୍ର ତରଙ୍ଗେ ଅଜ ପୋଖସ୍ତର ଅତଳ ପାତାଳେ
ଲୁଚି ଲୁଚି ଦେଖିବାକୁ ମନହୁଏ ମୋର—
ଚଷମା ଫାଙ୍କରେ ।

ବିଜୁଳି ପଙ୍ଖାର ପଷଗ୍ଲଇ—ବାରହୁଏ ନାଇ
ଶହ ଶହ ପୀତ ବଟ ଜଗିଲେଖି ଗୃହପାଶ ଘେର
ମୁଁ ଠିକ୍ ସେଇପର
ମୋର ସ୍ୱପ୍ନ ଦେଖନି ଦୁନିଆ ।
ଜାନୁଯାର ସିଆଲ୍‌ଦା ଷ୍ଟେସନ୍‌ର କାଠ ବେଞ୍ଚତଳେ
ବିକୃତ ଯା ହସ୍ତପଦ ହିରୋସୀମା ବୋମା ବର୍ଷଣରେ
ଅନଶନ, ମହାମାରୀ ପ୍ରପୀଡ଼ିତ କଙ୍କାଳ ପୃଥିବୀ
ଅଲିଙ୍ଗନ କରିବାକୁ ବଢାଇଚି କଳା! କଳା ହାତ ;
ତା ଅକ୍ଷିରେ ଜାଳିଦିଅ ମୁଠାଏ ଗୃହଜଳ
ପଦେବକଥା, ହସ, ଆଶା!—ଆଶ୍ୱାସନା ;
ନଦିଅ କାହାରେ ଅଶ୍ରୁ—ଅଶ୍ରୁ ଖାଲି ଦୁର୍ବଳ ବେଦନା ।
ବହୁଦିନ ବାକୀ ଅଛି—ଏଇ ମାନି ଯାତ୍ରାର ଆରମ୍ଭ
ନାଉରୀ ଭିଡ଼ିଚି କାଳ ଥଳକୁଳ ପାଇନି କେଉଁଠି,
ଯାହାକୁ ଛାଡ଼ିଚ ଅଗେ ତାହାଲାଗି ଫେରିଅନା ମୁଖ
ମୁଇ ତବ ପାଖେ ପାଖେ ଶୁକ୍ର, ବୁଧ, ଶନି ଓ ମଙ୍ଗଳେ !
ଅବଜଠେ ହାତମୋର—ଅଭିଷେକେ ପାଖେ ଲାଗିଆସ
ଏଇ ଦେଖ—କେତେ ଭଙ୍ଗି ହ୍ୟାଙ୍ଗର୍‌ର ନୃତ୍ୟ,
କେତେ ମୃଗ—ସିଂହ ଯୁଦ୍ଧ,
ପତନ, ଉତ୍ଥାନ;
ଅମେ କନୁ ଓଁ—କାର ଶରଣ ✱

୧୯ । ୨ । ୬୧ ଶାନ୍ତିନିକେତନ

---

✱ (ରବିବାର କଳିଙ୍ଗ ତା ୯ । ୪ । ୧୯୬୧ ରେ ପ୍ରକାଶିତ)

ଯେ ପଦ୍ମ ମଲ୍ଲୀ ଫୁଲ, ପାଣ୍ଡୁଅ ଘୋଡେଇ ତୁ ଜଣା ତାର
ବାସ ଅଠେଇ ପାରବୁ ବଉଳ ?

× × × ×

I was, as a gem, concealed
Me my burning ray revealed.
—koran

× × × ×

ଜଳଦ ଆବରଣେ ଭାସ୍କର କର
ଲୁଚ ଅନ୍ଧାର କେତେବେ ହେଲଣି ଚର ।
—ମଠାଣିସାମନ୍ତ ଲଳିତା

× × × ×

୧୯୪୧ ମସିହା ଦୋଲନଅମୀର ପ୍ରଭାତରେ ବୈତରଣୀତୀରର
ପିଠେଇ ପୁର ଗ୍ରାମ (ଯାଜପୁର ନିକଟବର୍ତ୍ତୀ) ଠାରେ
ଯେଉଁ ଉଜ୍ଜ୍ୱଳ ସୂର୍ଯ୍ୟର ଉଦୟ ଘଟିଥିଲା ଆଜ
ତାର **ପ୍ରଥମ ରଶ୍ମି** ଆତ୍ମପ୍ରକାଶ କରଛ ।

## ଦ୍ୱିତୀୟ ରଶ୍ମି

# ଥର୍ମାଲ୍ ଷ୍ଟେସନ୍

ନୂତନ ଦୀପ୍ତିରେ ଅଳ୍ପଦିନ ପରେ ଦେଖା ଦେବ ।